# ପଥପୁଷ୍ପ

ପ୍ରଣେତା

ଶ୍ରୀ ଗଗନ ବିହାରୀ ମହାନ୍ତି

ପ୍ରଥମ ମୁଦ୍ରଣ

୧୯୪୯

ପ୍ରକାଶକ

ଶ୍ରୀ ଶାରଦାପ୍ରସନ୍ନ ନାୟକ

ମୂଲ୍ୟ—ଏକଟଙ୍କା

# ଭୂମିକା

ଭୂମିକାରେ ଲେଖକ ଓ ଲେଖିକାମାନେ ନିଜ ନିଜର ଲେଖା ବିଷୟରେ କି ନିଜ ସମ୍ବନ୍ଧରେ କିଛି କିଛି କହନ୍ତି । ମୋର ତାହା ଦର୍କାର ନାହିଁ, କାରଣ କବିତା ହେଉଛି କବିର ନିଜ କଥା । ପାଠକ ପାଠିକାମାନେ ଏଇ ବାଟଠିଟି କବିତା ପନ୍ଥ ଜୀବନପଥରେ ଗତି କରିବାପାଇଁ କିଞ୍ଚିତ୍ ଖୋରାକ ପାଇଲେ ମୋ ଶ୍ରମ ସାର୍ଥକ ହେବ, ଏବଂ ସେହି କବିତା ଗୁଚ୍ଛ ଭିତରେ କବିର 'ନିଜକଥା' ସଙ୍ଗେ ସଙ୍ଗେ ନିଜର 'ନିଜକଥା' ପାଇଲେ ନିଜକୁ ଧନ୍ୟ ମନେ କରିବି ।

ଲେଖକ



# କୃତଜ୍ଞତା

ମୋର ଏହି ପୁସ୍ତିକାର ପ୍ରକାଶନରେ ଶ୍ରୀମାନ୍ ପଞ୍ଚାନନ ମହାନ୍ତି ଓ ଶ୍ରୀ ମହେନ୍ଦ୍ରକୁମାର ବେଉରିଆ ବିଶେଷ ଭାବରେ ମୋତେ ସାହାଯ୍ୟ କରିଛନ୍ତି । ସେମାନଙ୍କଠାରେ ମୁଁ ଚିର ଋଣୀ ।



ଲେଖକ

# ସୂଚୀପତ୍ର

# ସଂଶୋଧନ

| ପୃଷ୍ଠା | ଧାଡ଼ି | ଭୁଲ୍ | ଠିକ୍ |
|---|---|---|---|
| ୧ | ୧୯ | ଧ୍ୱଂସ୍ତ | ଧ୍ୱସ୍ତ |
| ୪ | ୧୧ | ମାନବ ତ, ତୁମେ | ମାନବ ତ'ତୁମେ, |
| ୫ | ୫ | ଢ଼ଳି | ଢ଼ାଳି |
| ୭ | ୪ | ଉଠବରେ | ଉଠିବ ରେ |
| ୮ | ୭ | ଖର୍ବାନ୍ୱୀତ | ଗର୍ବାନ୍ୱିତ |
| ୯ | ୧ | ଧ୍ୱଣି | ଧ୍ୱାଣି |
| ୧୨ | ୮ | ବେୟୁନେଟ | ବେୟୋନେଟ୍ |
| ୧୩ | ୩ | ପୁଷ୍ଖ | ପୁଷ୍ଟ |
| | ୪ | ବଂପ | ବାଂଫ |
| | ୫ | ଦୀପ୍ତିରେଖ | ଦୀପ୍ତିରେଖା |
| | ୧୫ | ମିଥ୍ୟଶ୍ରୟୁ | ମିଥ୍ୟାଶ୍ରୟୁ |
| | ୨୦ | ଟୀକ୍ଷଣ | ଟୀକ୍ଷ୍ଣ |
| ୧୬ | ୧୩ | ନବ | ନାବ |
| ୨୨ | ୩ | ଅକୁଣ୍ଠତ | ଅକୁଂଣ୍ଠତ |
| ୨୩ | ୯ | ଶିଳ୍ପୀର ସୂକ୍ଷ୍ମ କଳା | ଶିଳ୍ପୀର ସେ ସୂକ୍ଷ୍ମକଳା |
| ୨୯ | ୨ | ଉସ୍ସ୍ୱାସ | ଉଚ୍ଛ୍ୱାସ |
| ୩୨ | ୧୧ | ଗୃହଁ ଥିଲ | ଗୃହଁ ଥିଲ |
| ୩୨ | | ତଳ ଦରବାର ନାମ { ଦିଆଯାଇନ { | ଗୃହଁ ଥିଲ ଜଳ ଜଳ ଦରବାର ନାମ ହେବ "ଆଶ୍ୱାସନା" |
| ୩୩ | ୨ | ଦମାନେ | ବମାନେ |
| | ୪ | ଲକ୍ଷପଥ | ଲକ୍ଷ୍ୟପଥ |

| ପୃଷ୍ଠା | ଧାଡ଼ି | ଭୁଲ | ଠିକ୍ |
|---|---|---|---|
| ୩୭ | ୯ | ମେଘମନ୍ଦ୍ର ସ୍ୱର ପରେ ହେବ 'ଆଉ' | |
| ୫୧ | ୨୧ | ଶଟ୍ଟେରକ | ବଟ୍ଟୋରକ |
| ୫୪ | ୨ | ଧଳି | ଧୂଳି |
| ୫୭ | ୮ | କଂପ ଉଠେ | ଦଂପିଉଠେ |
| ୫୮ | ୬ | ରଖନା | ରଖନ୍ତା |
| ୬୨ | ୧୨ | ନମନା | ନମୁନା |
| ୬୩ | ୨୦ | ପୀରଘ | ପୀରଢ଼ |
| ୬୫ | ୧ | ରୋମାନେସ | ରୋମାନ୍ସ |
| ୭୭ | ୧ | ରୋମାଚ | ରୋମାଂଚ |
| ୮୦ | ୨ | ଦନ୍ଧ | ବନ୍ଧ |
| ୮୮ | ୯ | ମନ୍ଦଲି | ମନ୍ଦରି |
| ୯୦ | | ଦବଡାଟି ଅସମାପ୍ତ ନୁହେଁ, ସମାପ୍ତ । ଏଣୁ 'ଅସମାପ୍ତ'କୁ କାଟି ସମାପ୍ତି ଚିହ୍ନ ଦିଆହେବ । | |
| ୯୧ | ୨୧ | ଢୁମପିଂ | ଢୁମପିଁ |
| ୯୪ | ୨୯ | ହୁଅ | ହୁଅ |
| ୯୬ | ୪ | ବଥିସିଲ | ବସିଥିଲ |
| ୯୬ | ୫ | କାଢ଼ନେ | କାଉନେ |

ଏହାଛଡ଼ା କେତେକ ସ୍ଥାନରେ ମାତ୍ରା ଉଠି ଯାଇଛି । ସେ ସବୁଠିଁ ଠିକ୍ କରି ପଢ଼ି ଯିବାରେ କଷ୍ଟ ହେବ ନାହିଁ । ପୁଣି ପ୍ରାୟ ସବୁଠିଁ ମୁଁ କର୍ ପରେ ଉଠେ, ତାଗେ ପ୍ରଭୃତି କ୍ରିୟା ହୋଇଚ; ମାତ୍ର ସେ ଗୁଡ଼ିକ ଉଠେଁ, ତାଗେଁ ହେବ ।



# ପଥପୁଷ୍ପ

## ସମରର ଅବସାନ

ବିଜୟୀର ଦୂତ ବୁଲି ଜଳେ ସ୍ଥଳେ ନଭେ
ବଜାଇ ବିଜୟ ଭେରୀ କହିଲା ଗରବେ,
"ଯୁଦ୍ଧ ହୋଇଲା ଶେଷ ଏବେ ଯୁଦ୍ଧ ହେଲା ଶେଷ"
ପ୍ରତିଧ୍ୱନି ଲଭିଲା ଏ ବାଣୀ ଦେଶ ଦେଶ ।
ଗାଇଲା ବିଜୟୀ ସେନା "ଯୁଦ୍ଧ ହେଲା ଶେଷ,
ମିଥ୍ୟା ଅଛି ଏ ସଂସାରେ ନ ରହିବ ଲେଶ,
ଝଟକିବ ସତ୍ୟ ଏବେ, ସତ୍ୟର ଆଲୋକ
ପ୍ରଦୀପ୍ତ କରିବ ଏବେ ଦ୍ୟୁଲୋକ, ଭୂଲୋକ ।"
ବିଜୟୀର ଭେରୀନାଦେ କମ୍ପିଲା ଅବନୀ,
କମ୍ପିଲା ବିରାଟ ଏହି ବିଶ୍ୱର ଧମନୀ,
ଗାଇଲେ ମାଗଧେ ବୁଲି ଆନନ୍ଦର ଗାନ,
ଗୀତରେ ଉଛୁଳି ଉଠେ ବିଜୟୀର ପ୍ରାଣ ।
କଷ୍ଟ ଜଡ ଶେଯୁଁ ଉଠି ବୁଭୁକ୍ଷୁ ଜନତା
ଧୀରେ ଧୀରେ କ୍ଳାନ୍ତ ଅଙ୍ଗେ, ଅକ୍ଷି ଉତ୍ସୁକତା
ଦୀପ୍ତିହୀନ ଚକ୍ଷେ ତା'ର, ଥର ଥର ସ୍ୱରେ
କହିଲା, "ତୃପ୍ତି କି ଏବେ ମାନବ ସମରେ ?"
ହସି ହସି ଦୂତ କହେ, "ନାହିଁରେ ଶୋଚନା,
ନ ଲଭିବ ଆଉ କେବେ ସମର ଯାତନା,
ତବ ମହା ତ୍ୟାଗ ଫଳେ ଧ୍ୱଂସ ଅତ୍ୟାଚାରୀ,
ନମାଇବ ଆଉ କେବେ ଗରଳ ଉଦ୍‌ଗାର ।"

ଭାଙ୍ଗିଲା ଜଡ଼ତା ସ୍ଫୂର୍ତ୍ତି ଉନ୍ମଦ ଘାତରେ,
ଫୁଟିଲା ଗୋଲାପ ବୃନ୍ତ କୁଞ୍ଜରେ କୁଞ୍ଜରେ,
ଇନ୍ଦ୍ରଜାଲ ବଳେ ଦୂର ହୋଇ ଦେବ ଆଶା,
ଜନତା ଭୁଲିଲା ଦୁଃଖ, କ୍ଷୁଧା ଓ ପିପାସା;
ପ୍ରେମିକ ପ୍ରେମିକା ବେଣୁ ଲତା କୁଞ୍ଜେ ବସି
ଗାଇଲେ ପ୍ରେମର ଗାନ, ସ୍ୱତନ୍ତ୍ର ଭାବ ରାଶି

ରଚିଲେ ନୂତନ ଛନ୍ଦ ସବୁଜ ସମ୍ଭାର,
ଭୁଲିଗଲେ ଅନ୍ତରର ନିର୍ଯାତନା ଭାର;
ଛୁଟିଲା କୁଟିରଙ୍ଗନେ କବିର କଳ୍ପନା,
ବୀରତ୍ୱର ଗାଥା କହେ ପୁତ୍ର ପାଶେ ପିତା,
ନାରୀ ପାଶେ ବର୍ଣ୍ଣେ ସ୍ୱାମୀ ସମର କାହାଣୀ,
ଲୋମାଞ୍ଚିତ ହୁଏ ଶ୍ରୋତ୍ରୀ ଅବଳାର ପ୍ରାଣ।
ନଗରେ ନଗରେ ପୁଣି ପ୍ରାସାଦେ କୁଟୀରେ
ବାଜିଲା ଦୁନ୍ଦୁଭି ବାଦ୍ୟ, ଆନନ୍ଦ ମନ୍ଦିରେ
ଭୁଲିଲା ପ୍ରେରଣାରେ ଗତ ଦୁଃଖର ଶୋଚନା,
ପ୍ରାଣ ପ୍ରାଣ ହେଲା ଏବେ ପ୍ରାଣେ ଉନ୍ମନା।
ଉଡ଼ିଲା ପବନେ ଜାତି ବଇଜୟନ୍ତୀ ବାନା
ଦେଶଭକ୍ତ କୁସୁମେ ଚନ୍ଦନେ; କରେ ଆରାଧନା
ମିଳିଲେ ଗାଁ'ଗଲେ ଲକ୍ଷ ଲକ୍ଷ ନରନାରୀ,
ଝରିଲା ଆବେଗ ସ୍ରୋତେ ନୟନରୁ ବାରି।
ବ୍ୟସ୍ତ ପ୍ରାଣ ମୋ'ଙ୍କେ ସଦା ଯାନ୍ତ୍ରିକ ନିଶ୍ୱାସ,
ମରୀଚିକା ଦେଖି ଯଥା ଜଳର ବିଶ୍ୱାସ
ମରୁଚାରୀ ପାନ୍ଥ ମନେ ଭାବିଲା ଜନତା,
ଏଥର ଆସିଲା ନିଶ୍ଚେ ଶାନ୍ତିର ମୌନତା।

ଏଥେନ୍ସ କ୍ରୂର ଋଷି ଚଟାଇ ତାହାଙ୍କି
କହିଲ, "ବିଜୟୀ ଏବେ ମୁକ୍ତ ଦୀପ ଜାଳି
ତାହାଙ୍କୁ ଶାନ୍ତିର ପଥ, ଅବଶ୍ୟ ତଥା
ମଧ୍ୟ ଏହି ମନ୍ତ୍ରପଠରେ, ତୁଟିଯିବ ବ୍ୟଥା ।"
'ତୁଟିଯିବ ବ୍ୟଥା, ଆମ୍ଭ, ଦୁଃଖ ଯିବ ସବୁ !"
ଜନତା କହିଲ ପ୍ରେମ ପଠନେ ସଞ୍ଚର ।

ଶାନ୍ତି ଦାମୀ, ମୁକ୍ତି କାମୀ ସେନାପତି ଦଳ
ଅଟ୍ଟହାସେ ତୁଣ୍ଡ ଭରି ଯନ୍ତ୍ରଣା ମାତାଳ
ଯେଗଣ ଭରିଲେ କେତେ ବରାଠ ଢୁପାବ,
ତୁଣ୍ଡ ଶଙ୍ଖ ଅଶାନ୍ତି, ଓ ସ୍ୱାର୍ଥ, ଈର୍ଷାଭାବ ।
ଅଦ୍ଭୁତ କରିବ ହେବ ସମସ୍ତ ଅବନୀ,
ଶାନ୍ତିର ମନ୍ତ୍ରରେ ଭାବେ ବିଜୟୀ ସେନାନୀ ।
ଏହାଲେ ଶୁଭିଲ ଏକ ଉଚ୍ଚ ଜୟ ଧ୍ୱନି,
କମ୍ପିଗଲା ସେ ଶବଦେ ସବୁଜ ଅବନୀ,
କମ୍ପିଗଲା ଶାନ୍ତି ସଭା, ସେନାପତି ଦଳ
ଅଟ୍ଟହାସ ଠେକ ହେଲେ ନିଶକ୍ତ, ଚଞ୍ଚଳ ।
ପ୍ରତିଧ୍ୱନି ସେ ସ୍ୱରର ଆକାଶେ ଆକାଶେ
ମେଘେ ମେଘେ ଗଡ଼୍‌ଗଡ଼ିକେ ବ୍ୟାପିଲା ଚଉପାଶେ ।
"ଧମ୍ମବୀର ଜୟ ହେଉ, ଜୟ ଶାନ୍ତି ସେନା
ଜୟ ହେଉ ମାନବର, ଉଡ଼ୁ ଜୟ ବାନା"—
ଧ୍ୱନିରେ କଂପାଇ ଆସେ ଶିମ୍ମବୀ ଜନତା—
ଏକ୍ ଦୁଇ ଏକ୍ ଦୁଇ ଶୃଙ୍ଖଳର ଭୁକ୍ତତା ।
ଏକ୍ ଦୁଇ ଏକ୍ ଦୁଇ—ବହୁଚି ସମୀର,
କୋମଳ ଗୀତିକା ଗାଇନ ହୃଦୟ ଅଧୀର,

କେତନର ରଂଧ୍ରେ ରଂଧ୍ରେ ପ୍ରାଣ ପଏ ଭରି ।
କେତନ ସେ ସ୍ପର୍ଶ ପାଇ ଉଠୁଛି କଲ୍ଲୋଳ ।
ଫୁଟିଯାଏ ପଦପ୍ରାନ୍ତେ ସହସ୍ର ଗୋଲାପ,
ଚହେଁ ବକ୍ଷେ ପଦ୍ମଫୁଲ୍ଲ କରନ୍ତି ଅଳାପ,

କୋଇଲି ଝଙ୍କୃତ ଗାଇ ବିଜୟର ଗାନ
ଅକାଶ ଗମ୍ଭୀର ହୋଇ ହୁଏ କମ୍ପମାନ ।

ବିପ୍ଳବୀର ସେନାପତି କହେ, "ଏ କି ଶାନ୍ତି !
ଅଶାନ୍ତି ପୋଷଣେ କିଆଁ ଜନମାଅ ଭ୍ରାନ୍ତି ?
ଅଭ୍ୟାଗ୍ରରେ ଯହିଁ ଏହି ସମରର ଶେଷ,
ମିଳିବ କି ତହିଁ ରମ୍ୟ ମୁକତିର ଦେଶ ?
ମାନବ ତ, ତୁମେ, ତୁମ ଭାଇର ଯନ୍ତ୍ରଣା
ନୁହେଁ କି ତୁମର ଦୁଃଖ ? ଅଶ୍ରୁର ଝରଣା
ଭାବିଛ କି ହୁଏ ଛିନ୍ନ ? ହେଲା ଯୁଦ୍ଧ ଶେଷ ?
ହେଲା ଶେଷ ସମରର କ୍ଳାନ୍ତି, ପଥ କ୍ଳେଶ ?
ଶାନ୍ତିର ମନ୍ତ୍ରଟେ ଯଦି ଭାଇ ଭାଇ ମିଳି
ନହୋଇଲେ ପରସ୍ପରର ପ୍ରେମେ କୋଳା କୋଳି,
କି ଲାଭ ଏ ସମରର ଘାଣ୍ଟି ଚକ୍ରଯାତେ ?
ଅଜି କି ଧରଣୀ ଭ୍ରାନ୍ତି ଅଂଗନେ ନମାତେ ?
ହେବାଲାଗି ବିଜିତର ଦେଶ ଅଧିବାସୀ
ଅଧିକାର ଦେଲା କିଏ କହନ୍ତି ବିଚୁର !
ବର୍ଷ ବର୍ଷ ଧରି ଯାରେ ଦିଅ ନିର୍ଯାତନା,
ଚିର ଦାସ ବୋଲି ଯା'ରେ କରିଚ କଳ୍ପନା,
ଯାହାର ରକତ ଶୋଷି ଫୁଲିଉଠ ସ୍ଫୀତ
ସେ ଟିକି ଜାତିଟିରୁ ଆପ ଗଉରବେ ମାତ ।"

ସେନାପତି କହେ ପୁଣି ସେନାବର ଅନାଇ,
"କି କରନ୍ତି ଶାନ୍ତି କାମୀ, ଦେଖ ଥରେ ଚାହିଁ ;
ଅଛି ଯଦି ପ୍ରାଣେ ତବ ଶାନ୍ତିର ବାସନା,
ଜାଗୁଥାଏ ଯଦି ଚିତ୍ତେ ମୁକ୍ତିର ଯାତନା,
ଭୁଲ କ୍ଳାନ୍ତି, ଭୁଲ ଶ୍ରାନ୍ତି, ଚାଲ ଲଢୁ ଲଢ
ମୁଖେ ମୁଖେ ପୃଥିବୀରେ ଜୟଗୀତ କୁହ ;
ଶତ ଅସ୍ତ୍ର ଲକ୍ଷ ଲକ୍ଷ ଅତ୍ୟାଗ୍ନି ଧରେ,
ନ ଜଗାଉ ଭୀତି ତାହା ତୁମର ଅନ୍ତରେ ।
ଆମର ଏ ଅଶ୍ରୁ, ପୁଣି ଆମ ଅକୁଳତା
ହେବେ ଅସ୍ତ୍ର, ତହିଁ କାଟି ଯେତେ କଣ୍ଟଲତା
କଟିବା ସମର ଗ୍ରୀଷ୍ମ ବିନା ରକ୍ତପାତେ—
ଶେଷ ହେବ ନିଶି, ଦେବେ ଦେଖା ସୂର୍ଯ୍ୟ ପ୍ରାତେ ।
ସମରର କ୍ଳାନ୍ତି ଭୁଲି, କର ନମସ୍କାର
ସେ ପୁଣ୍ୟ ଦେବତା ପାଦେ, କର ତିରସ୍କାର
ରକ୍ତ, ରକ୍ତ ଅତୀତରେ, ରଚିବା ମଣ୍ଡପ,
ହୃଦୟ ହୃଦୟ ଖୋଲି କହିବା ଆଳାପ ।
ବିଜିତ ବିଜୟୀ ଭେଦ ଭୁଲି ହୋଇ ଭାଇ
ସତ୍ୟ ଶିବ ସୁନ୍ଦରର ଉତ୍ସେ ଦିବା ଧାଇଁ ;
ମାନବର ମାନଦଣ୍ଡେ ଗଢିବା ସଂସାର,
ଇତିହାସ ହେବ ଏହି ଦୁନିଆ ଅସାର ।
ବଜାଅ ବିଜୟ ଭେରୀ, ଗାଅ ଜୟ ଗାନ,
ବିଶ୍ୱର କଲ୍ୟାଣେ ଢାଳ ତନୁ ମନ ପ୍ରାଣ ।"

— × × —

## ନ୍ୟୁରେମ ବର୍ଗ

ନ୍ୟୁରେମ୍ ବର୍ଗ କରୁଣେ କାନ୍ଦୁ ଚେଞ୍ଚ କଠୋର ସ୍ୱରରେ
କହେ ଅଜ କଥା, ସଭ୍ୟ ଦୁନିଆ, ମୁସ୍ୱାବ ରଖୁଚ କାହାର ?

ଯେଉଁ କଥା କହୁ ଗ୍ରୈବାଇଛନ୍ତି ଗୋଏବଂ ହିଟଲର,
ରବେନ୍‌ଟ୍ରପ୍ ଓ ସାଥି ଗଣେ ଯାହା କହୁଲେ ତା ଶୁଣିଅଛ ?

ଶୁଣିଅଛ କରେ ପାସ୍ ଲାଠେ ଯାହା ଉଠିଥିଲା ମର୍ମର ?
ସ୍ପନ୍ଦନେ ଯାର କମ୍ପନମାନ ବାୟୁ ଉଠିଥିଲା ଥରି ?

“ଜର୍ମାନ ମୁହିଁ, ଭଲ ପାଏ ଅତି ମୋର ଜର୍ମାନ ଜାତି,
ଜର୍ମାନ ଲାଗି ଯାଉ ମୁଁ ପାରୁଛୁ ଗର୍ବେ ମୋହର ଛାତି”

ଦଣ୍ଡ ବିଧାତା ! ଦେଖିଥିଲ କେବେ ଜର୍ମାନୀ ଟୁଟା ଭଣ୍ଡା
ହୋଇଲା କଠୋର ଶସ୍ତ୍ରାଘାତ ଛଡ଼େ ଚହଲା, ବାହୁଦଣ୍ଡା !

ସେହି ସ୍ପନ୍ଦନ, ସେହି କମ୍ପନ, ସେ କଥାରେ ଲେଖିରଖ,
ଲେଖିରଖ ପୁଣି, ଜର୍ମାନ ଜାତି ହେବ ନାହିଁ ଶିର ନତ ।
ଜର୍ମାନୀ ପୁଣି କହିବ ନିଜର କଥା,
ବିଶ୍ୱ ସଭାରେ ଉଚ୍ଚେ ପୁଣି ତୋଳିବ ନିଜର ମଥା
ନ୍ୟୁରେମ୍ ବର୍ଗ କହେ ପୁଣି, ଶୁଣ “ଅରେ ରେ ଅଭାଗୁଆ,
ବିଶ୍ୱ ଶାନ୍ତି ଲାଗି ଯେ ରହିଲ ତୁମେ ଏହି ହତ ବଳି,
ଯାହାକୁ ବଳି ସଭ୍ୟ ସମାଜ ଅଛନ୍ ସମର୍ଥନ,
ସେହି ଯଉନରେ ଲେଖା ଅଛି ଜଣେ ପ୍ରାଚ୍ୟ ଗୋଇନ୍ଦା ପଣ
ଭାରତ ବ୍ରହ୍ମ ଇଣ୍ଡୋନେସିଆ ଲଙ୍କା ଶୋଷିବା ନୀତି
ଯେଉଁ ଅଇନର ସେ କି ପୁଣି ଦେବ ଜର୍ମାନ ପ୍ରାଣେ ଭୀତି ?
ମୁଷ୍ଟିମେୟ ଯେ ଶାନ୍ତିର ନାମେ ସ୍ୱାର୍ଥେ ରହିଛ ଜଡ଼ି,
ପାରିବ କି, କହ ବିଶ୍ୱ ଅଇନ୍, ଶାନ୍ତି ଦୁନିଆ ଗଢ଼ି ?

ତୃପ୍ତ କଣ୍ଠେ କି ମନ୍ତ୍ର ଉଚ୍ଚାର !
ବଂଶ ଶାଖୀର ବୃନ୍ତେ ଏକି ତବ ଉଚିତ ବେଭାର ?
ବଂଶ ଶୋଢ଼ୀ ଏବେ ସଭ୍ୟତାର ଚରମ ଶିଖର !
ଛକୁଛ ଯେ ଚରଦାନ ଦୈନଦାନ ମଣିଷ ପ୍ରାଣର

ହୋଇଥିଲ ପ୍ରଭୁ ଅଜ୍ଞ କରେ ମଥା ନମ୍ରେ ଅବନତ !
ମଣିଷ ଦଳନ୍ତି ଆଜ ଈଶ୍ବର ଓ ଭାଗ୍ୟର ମହତ
ଗର୍ବାନ୍ୱିତ ପାଦେଦଳି'ର—ପିଠେଣ ଦୂରେ ଫାକ୍ ମାତବାଦ—
ସୃଷ୍ଟିର ସେ ଅଧିକାରୀ—ସ୍ରଷ୍ଟା ସେବେ !—ତା'ର ନିନ୍ଦାବାଦ !
ଅଟ୍ଟହାସ ! ଏକି ଅଟ୍ଟହାସ !!
ସ୍ୱଗର ବ୍ୟାଦାନ ଗର୍ଭେ ଗରଳର ଏ କି ଫାଟ୍ ଶ୍ୱାସ !!
ଏ କି ପୁଣି ! କି ପରିବର୍ତ୍ତନ !
ଭାଙ୍ଗି ସେ କରାଳ ମୂର୍ତ୍ତି ! ରୂପ ଏ ଯେ ଶଙ୍କଟ କରୁଣ !!
ବୁଢ଼ୀ ମା' ଗଳ୍ପର ବେନି ରାଜକନ୍ୟା କାନ୍ଦନ୍ତି କି ବସି
ରାକ୍ଷସୀର ହର୍ମ୍ମ୍ୟ ତଳେ ! ବହୁଛି ଯେ ଲୋତକ ସରସୀ !!
ବେନି ବଂଧୁ କହନ୍ତି ବିଳାପେ
"ଦେଖରେ ମଣିଷ ରହିଁ ତୋର ଶକ୍ତି ଭାଙ୍ଗେ ଅପେ ଅପେ"
ରହିଲି ମୁଁ, ଏ କି ଅଚମିତ !!
ଲଙ୍କାପୁରୀ ଯାଏ ଭାଙ୍ଗି ! ଖଣ୍ଡ ଖଣ୍ଡ ହୋଇଛି ସ୍ଖଳିତ
ଉଷ୍ଣ ଏ ମହାକାଳ ଗର୍ଭେ—
ଅତ୍ରେ ଶେଷେ ମହାଦୁର୍ଗ-ହର୍ମ୍ମ୍ୟ ଯାଇ ପାତାଳରେ ଦବେ !!
ଏତ ପୁଣି କଥା ଅଭିନବ !!
ଓଠକ୍ଷେ ଓଠରେ ବେନି ଲେଖିଛନ୍ତି ହସର ଶବ୍ଦ !
ଫେରନ୍ତି କି ରାଜପୁତ୍ର ରାକ୍ଷସୀର ପ୍ରାଣ ଧ୍ୱଂସ କରି,
ଗର୍ଭଗରେ କି ପାଇଛନ୍ତି ସାତଭାଇ ପୋଖରୀର ତଳେ,

ଫୋଟିଛନ୍ତି ପଦ୍ମଅରି ଭ୍ରମରଟି, ଦେଖୁଛନ୍ତି ହସି !
ଜନାଦର ପ୍ରେମ ଏଣୁ ବନ୍ଧୁଙ୍କ ପ୍ରାଣରେ ଉଙ୍କାଣି !
କଥା କୁହ କଥା କୁହ ବନ୍ଧୁ !
କହନ୍ତୁନ ବନ୍ଧୁ କଥା—ନୟନରେ ଦୀପ୍ତ ସ୍ମିତ ସିନ୍ଧୁ ।
ଦେଖନ୍ତୁ କି ସ୍ୱର୍ଣ୍ଣ ଭବିଷ୍ୟତ !
ରାବଣ ମୃତ୍ୟୁରେ ହୁଏ ଲଙ୍କାପୁରେ
ବିଭୀଷଣ—ସୁବର୍ଣ୍ଣ—ରାଜତ୍ୱ !!

— ୪୦୪ —

## ସେବାଗ୍ରାମ ଓ ନିଉୟର୍କ

ନ୍ୟୁୟର୍କ କୁହାର ଘର, ସୂର୍ଯ୍ୟାଲୋକେ ଖଦ୍ୟୋତିକା ସମ
ବିଜ୍ଞାନ ବନ୍ଧନ ଚିହ୍ନ ଏହୁ ବିଂଶ ଶତାବ୍ଦୀର ବୋଲେ,
ଶାନ୍ତ ଅତି ଚନ୍ଦ୍ରକଲ୍ପ ସମ
ବସିରହେ ସେବାଗ୍ରାମ ନିର୍ଜନେ ଓ ସାତ୍ତ୍ୱିକେ, ଗମ୍ଭୀରେ ;
ଉପରେ ଅକାଶମାଳ ପୃଥିବୀର ଚନ୍ଦ୍ରାତପ ସମ—
ତୋଳେ ତାର ଲକ୍ଷ ଲକ୍ଷ ଜ୍ୟୋତିଷ୍କ ଓ ମେଘ, ବଜ୍ର, ବିଦ୍ୟୁ,
ଅବରଣେ ମଳୟ ଓ ଝିଂକାରି ଝଂକାର,
ବସନ୍ତ ମୂର୍ଚ୍ଛା ତଳେ ରଂଗ ଆଉ ଛନ୍ଦରେ ମୁଗ୍ଧର ,
ଯାହାର ସୃଜନ ଏହୁ ମର୍ତ୍ତ୍ୟପୁର, ଅକାଶ, ପାତାଳ,
ଯାହାର କୋମଳ ସ୍ପର୍ଶ ତ୍ରୁଟିଛଟେ ଅଣୁରର ଅଣୁରେ,
ତାର ଜୟ ଗୀତ ଗାଇ ଭା ମିଳିତ ପ୍ରାଣେ ପ୍ରାଣେ ଭବି,
ତାହାର ପରଶେ ଅଛି ମୁନମୋହନ ଅମୂଲ୍ୟ ସଂସାର,
ସେବାଗ୍ରାମ କରେ ନିମ୍ନଗତ,
ଯେ ବିଶ୍ୱ ପ୍ରୀତିରେ ନିଜେ ଛୁଟି ଲଟେ ଏ ମହା ପୂଜନେ,

ତାହାର ଅନ୍ତରେ ନିଜ ହୃଦୟ ଅଜାଡ଼ି,
ଡାକ ଦଏ ପୃଥିବୀକୁ---
କହେ ସେ "ମନିଷ ଆସ, କୃତ୍ରିମର ଉତ୍କର୍ଷର ଭିତ୍ତି,
ଜୀବନ ବାନ୍ଧିବା ଅତି ସରଳରେ, ଅତି ଆନନ୍ଦରେ,
କରିବା ଏ ଧରିତ୍ରୀ ସୁନ୍ଦର ।"
ନିଉୟର୍କ ବସିରହେ ରାବଣର ଲଙ୍କାପୁରୀସମ
ଗର୍ବୋନ୍ନତ,ସ୍ଫୀତବକ୍ଷ, ପୃଥିବୀରେ କରି ଅଟ୍ଟହାସ—
ମହାଦେବ ବରଲାଭେ ବାଣାସୁର ଭୁଞ୍ଜିଛି ବିଭବ;
ପରମାଣୁ ବୋମା ଆବିଷ୍କର
ଶ୍ରେଷ୍ଠ ବରଲାଭ ତା'ର— ବିଜ୍ଞାନରେ ପରାକ୍ରାନ୍ତ ମଥା ।
ପୃଥିବୀକୁ ନିଏ ଟାଣି ଧ୍ୱଂସପଥେ, ଧ୍ୱଂସର ଯାଗରେ
ଶିଖାଏ ଧ୍ୱଂସର ଲୀଳା;
ତାଣ୍ଡବର କଙ୍କାଳ ବିଳାସ,
ନିତ ନିତ କରୁଛି ପରୀକ୍ଷା
ଧ୍ୱଂସ ଉତ୍ପାଦନ କେବେ ହେବ ପୂର୍ଣ୍ଣ ହେବ ଶ୍ରେଷ୍ଠତମ ।
ହାତେ ତା'ର ଗତି ଉଠେ ସୁବୁଦ୍ଧିର ସହଜ ମଣିଷ
ଗୁରୁକାର୍ଯ୍ୟ ପ୍ରଲୋଭନେ କ୍ରୀଡ଼ନକ—
ଏକ ପ୍ରତାରଣା,
ସ୍ୱପ୍ନ ରହେ ତର୍ଜ୍ଜି ଅନ୍ତସ୍ଥଳେ—
ଅଜ୍ଞାତେ ଯାହାର ପ୍ରୀତି ନିଜସ୍ଥିତି କରିଛି ସମ୍ପଦ
ତାହାରେ ପ୍ରଭୁତ୍ୱ ପାଇଁ ଆକୁଳିତ ଅବାରିତ ମନ ।
କହେ ସେ "ମଣିଷ ଆସ, ସ୍ୱାର୍ଥେ ଦିଅ ପ୍ରାଣ ଜଳାଞ୍ଜଳି,
ଧନ୍ୟ ସ୍ଥିତ ମୁହେଁ ହୃଷ୍ଟ—ସାରାକାଳ ମହିତେ ଅସ୍ତି ଭୁ,
ପ୍ରକୃତିରେ ହେବ ଚିର ବଶ"

---

# ମୃତ୍ୟୁଞ୍ଜୟୀ

( ସ୍ୱର୍ଗତ ରାଜେନ୍ଦ୍ରଲାଲ—ନୁଆଖାଲିର ବୀର ସୈନିକ )

ସେଦିନ ପୃଥିବୀ ଗୋଟା ହୋଇଥିଲା ଗାଢ଼ ଅନ୍ଧକାର ,
ଲକ୍ଷ ଅମାବାସ୍ୟା ଯେଉଁଠି କରୁଥିଲେ ରଙ୍ଗ ଅଭିସାର
ଛନ୍ଦ ବାହୁ ଛନ୍ଦ ଗ୍ରୀବା ! ନାହିଁ ଚନ୍ଦ୍ର, ନାହାନ୍ତି ତାରକା
ଯେତେକିଭ ଶବ୍ଦ ଗଲି ; ପ୍ରାଣେ ପ୍ରାଣେ ବିକଟାଳ ଶଙ୍କା,
ଝିଲ୍ଲୀ ରବେ ଝିଇଁ ଝିଇଁ ପ୍ରାଣ କାନ୍ଦେ କଇଁ କଇଁ କଇଁ,
ଶୂନ୍ୟେ କିଏ ଉଚ୍ଚ କହେ—ଆଶା,ଅଗୋ ଆଶା ଆଉ ନାହିଁ
ନିଶ୍ଚେଷ୍ଟ ମୂକ ଗ୍ରାମବାସୀ, ଙ୍କେ ଗୃହେ ରାଜେନ୍ଦ୍ର ବି ମୂକ,
ଗୁଣ୍ଡାର ଚିଠାଭ ହାତେ—ପ୍ରତ୍ୟୁଷେ ଯେ ପ୍ରାଣେ ପ୍ରାଣେ ଦୁଃଖୀ ।
ଚିଠି କହେ,—"ହେବ ଯଦି ଆନନ୍ଦରେ ହୁଅ ମୁସଲମାନ,
ବେଦଗୀତା ଫିଙ୍ଗି ଦୂରେ ହାତେ ଧର ପବିତ୍ର କୋରାନ,
ନୋହିଲେ ପ୍ରସ୍ତୁତ ରହ ଅସି ଧାରେ ହେବା ଲାଗି ବଳି;
ମହମ୍ମଦ ନାମେ କହୁଁ, ନହିଁ ପଥ ଫିରିବାକୁ ଉଦ୍ଧାର;
କାଲି ପ୍ରାତେ ହେବ ଦେଖା—ଆଶା କରୁ 'ପାକିସ୍ଥାନ ଜୟ'
ଉଚ୍ଚାରିବ ସ୍ଫୀତ କଣ୍ଠେ, କୋଲେ ଆମ ଲଭିବ ଅଭୟ ।"

ଛଳ ଛଳ ଚକ୍ଷୁ କରି ନତ
ସଭିଙ୍କନେ ଗୃହେ ଉତ୍କଣ୍ଠିତ

କହିଲେ ରାଜେନ୍ଦ୍ର,"ଭାଇ, ବରି ନେଲ ଶେଷେ କେଉଁ ପଥ ?
ଗୁଣ୍ଡାର ଗୋଲାମୀ, ଅବା ଚିରୋଜ୍ଜ୍ୱଳ ବୀରୋଚିତ ସତ୍ୟ ?"
ଉଠିଲା କନ୍ଦନ ରୋଳ, ଜଣେ ତହୁଁ କହିଲା, 'ହଜୁର,
ଅସ୍ତ୍ରହୀନ ସର୍ବେ ଆମେ; ଗୁଣ୍ଡାକୁଳ କରିଦେବେ ଚୁର

କ୍ଷଣକରେ ସାରାଗ୍ରାମ, ସାହାସ୍ଥାନ ହୋଇ ନ ସକୁଲ
ଗୁଣ୍ଡାର ଗୋଲାମ ହେବେ ଦୁଃଖୀ ଲଭି ଜୀବନେ ଅତୁଳ,
ଏଣୁ ଶେଷୁ ପଳାୟନ ଧନଧାନ୍ୟ ଗୃହ ତ୍ୟାଗ କରି—
କାଟିବା ନିଜର କାଳ ଦୁଃଖେ ସୁଖେ କପାଳ ଆଦରି ।”

ଦୃପ୍ତ କଣ୍ଠେ କହିଲେ ରାଜେନ୍ଦ୍ର
“ଏ କି କହ, ତୁମେ ସମରେନ୍ଦ୍ର ?

କ୍ଷୁଦ୍ର ସମ ଯିବା ତାହିଁ, ବୀର ସମ ନଦେଇ ଜୀବନ?
ଶତ୍ରୁ ତ’ ଆମର ଅସ୍ତ୍ର ! ଅସ୍ତ୍ର ନୁହେଁ ବେୟୋନେଟ, ଗନ ।
ନ କରେ ଯେ ଧର୍ମରକ୍ଷା, ମାନରକ୍ଷା, ଦେଶ, ବିଶ୍ୱରକ୍ଷା,
ନାହିଁ ତାର ମନୁଷ୍ୟତ୍ୱ, ସେ ତ, ଏକ ରସହୀନ ଦ୍ରାକ୍ଷା !
ଯେ ଯିବ ଯାଅ ଏ ରାତେ ବୀର ଯେ ସେ ରହିବ ମୋ ଘରେ,
କାଲି ସେ ହୋଇବ ଲିପ୍ତ ରାକ୍ଷସ ଓ ମଣିଷ ସମରେ ।’
ସର୍ପ ଦେଖି ପକ୍ଷୀ ଯଥା ଗୋଳ କରି ବହୁ ଗ୍ରାମବାସୀ
ସେହି ରାତେ ଗ୍ରାମ ଛାଡ଼ି ଭୟାର୍ଥେ ଲେ ହେଲେ ପରବାସୀ ।
ମୁଷ୍ଟିମେୟ ବୀର ମାନେ ଅସ୍ତ୍ର ଧରି ସେ ରାତେ ତଥାର
ସତ୍ୟେ ହୋଇ ଅନୁରକ୍ତ ଦ୍ୱାରେ ଦ୍ୱାରେ ହେଲେ ଜଗୁଆଳ !
ଅଭ୍ୟନ୍ତରେ ରହି ନାରୀ ସମ୍ମୁଖୀନ ବିପଦେ ଜାଗ୍ରତ,
ପ୍ରତିଜ୍ଞା—ଗୁଣ୍ଡାର ଦର୍ପେ ହେବ ନାହିଁ ସତୀ କେବେ ନମ୍ର ।

× × ×

ପାକିସ୍ତାନ ଜୟନାଦେ ଉଚ୍ଛୁଳିଲା ବିରାଟ ଗଗନ,
ଥରିଲା ପାଦର ଚାପେ ସୁଶ୍ୟାମଳା ପୃଥିବୀ ପ୍ରାଙ୍ଗଣ;
ଖେଳିଲା ଆକାଶ କୋଳେ ବହ୍ନି ଆଉ ଛୁଟିକା ବିଦ୍ୟୁତ,
ବନ୍ଧୁକ ଆବାଜ କଲା ଉଦ୍‌କର୍ଣ୍ଣ କୁଳୀପ ବିଚ୍ୟୁତ,

ବହିଲା ରକ୍ତର ଧାର—ନାଲି ହୋଇଲା ଶାନ୍ତ ଗ୍ରାମ ମାଟି,
ଚଢ଼ିଦେଲା ଉଡନ୍ତା ପକ୍ଷୀ ଏକ କାଳଗର୍ଭ କାଟି;
ନିଷ୍ପେଷେ ହୋଇଲେ କ୍ଳାନ୍ତ—ସ୍ତବ୍ଧ ଭଙ୍ଗେ ଢଳେ ଲୋଚନ,
ରକ୍ତର ଉତ୍ତପ୍ତ ବାଷ୍ପ ପୂର୍ଣ୍ଣ କଲା ପକ୍ଷୀର ଗଗନ ।
ସ୍କେନ୍ଦ୍ ସୈନ୍ୟର ମୁଖେ ଦୃପ୍ତ ରେଖା—ଦୃପ୍ତର ନିଶ୍ୱାସ,
ଚକ୍ଷେ ବକ୍ଷେ ହିମାଳୟ—ନାସା ପ୍ରାନ୍ତେ ଉତ୍ତପ୍ତ ନିଶ୍ୱାସ ।
କହନ୍ତି ସ୍କେନ୍ଦ୍ ବୀର—ହୋଇ ନାହିଁ ଚେଷ୍ଟାର ଶେଷ,
ସରିନାହିଁ ଯବନିକା,—ତ୍ୟାଗ କର କ୍ଲାନ୍ତି ଆଉ କ୍ଲେଶ,
ଜୀବସ୍ୟନ୍ଦ ଧ୍ରୁବୋ ମୃତ୍ୟୁ—ମୃତ୍ୟୁ ଲାଗି ନ କର ଶୋଚନା—
ଯାତ୍ରୁର ଜୀବନ ଅଶା—ଗୌରବର ମହା ବେଦନା ।

× × ×

ଅସିଲେ ସପକ୍ଷେ ଛୁଟି—ସୃଷ୍ଟି କଲେ ଧୂଳିର କୁହୁଡ଼ି,
ଆକାଶ ଫଟାଇ ଦେଲେ ମଦ ମତ୍ତେ କାଳ ଘୋର ରଡ଼;
କହିଲେ ସ୍କେନ୍ଦ୍—ବୀରେ, ସତ୍ୟ ପାଦେ ଦେଇ ପ୍ରାଣ ବଳି
ନ ହଟିବ ତିଳେ ମାତ୍ର; କର୍ଣ୍ଣେ କେବେ ନିସ୍ପୃଷ୍ଟ ହକାର
ନ ଲେଉଟିବ ମିଥ୍ୟା ଶବ୍ଦ—ନକରିବ କରୁଣ ଚିତ୍କାର,
ବୀର ମୁଖେ ଦୀପ୍ତି ଯଦା—ସ୍ମିତକୁଳ ବୀରର ଆଧାର ।
ଲାଗିଲା ତୁମୁଳ ଯୁଦ୍ଧ—ରାକ୍ଷସର ହେଲେ ଧ୍ୱଂସ ମୂର୍ତ୍ତି,
ସ୍କେନ୍ଦ୍ ସୈନ୍ୟର ଭାଲେ ସତ୍ୟ ଶିବ ସୁନ୍ଦରର ସ୍ଫୁର୍ତ୍ତି;
ଏକ କହେ "ଧ୍ୱଂସ ହୁଅ—ଅବା ହୁଅ ଭୋଗରେ ଦୀକ୍ଷିତ"
ଆନ କହେ, "ଧର୍ମ ନୁହେଁ ତୀକ୍ଷଣ ଏହି ଅସିରେ ଲିଖିତ—
ଧର୍ମ ମନ୍ତ୍ର ପ୍ରେମ ମନ୍ତ୍ର—ଭିନ୍ନ ନୁହେଁ ଗୀତା ଓ କୋରାନ—
ପାଣ୍ଡବଙ୍କ ଭାଗ୍ୟେ ନୁହଁ ମଦମତ୍ତ ସାଧୁ ମୁସଲମାନ ।"

ଶେଷଥର ଆସି ବର୍ତ୍ତା ଏକ ବାଜି ଗଲା ସ୍ୱର୍ଗେନ୍ଦ୍ର ଭବନେ,
ଯେ ଯୋଝିଲେ ଭୂଖଣ୍ଡସ୍ୱାମୀ—ବର୍ଷ ଯଦେର ଶତ ଆକ୍ରମଣ ।
ମର୍ମର କହିଲେ ବୀର—ଭଗବାନ୍ ଦେଉ ତବ ଦୟା,
ପାପୀ ହ୍ରାସେ ଭଥ କ୍ଷୁହ—ଯାହା ଲଭୁ ଧର୍ମ ଅଯୋଧ୍ୟା ।"
ଜଢ଼ଟଲା ଶେଷ ବାୟୁ—ଚକ୍ର ଗଲା ସ୍ରୋତସମ ଝଡ଼,
ପଯ୍ୟାଟେ ନାଶଲେ ମର୍ତ୍ତ୍ୟ ଜଡ ବୃକ୍ଷ ମୂଳକେ ପହଁଚ;
ମରିଗଲା ମାଂସପିଣ୍ଡ—ଆତ୍ମା କିନ୍ତୁ ମୃର୍ତ୍ତ୍ୟରୁ ବଡ—
ପୃଥ୍ୱୀ ଗାଇଲା ଉଚ୍ଚେ—"ତୁମେ ବୀର, ତୁମେ ବନ୍ଧୁ ବୀର ।"

—୫୦୪—

## ମହାବ୍ରତ

—ହେବ ନାହିଁ, ହେବ ନାହିଁ ସଖା ଚକ୍ରାନ୍ତ ଏ ପୃଥିବୀ କି ଶାନ୍ତ ?
ନ ଦେଖିବ ମଣିଷକୁ ସଙ୍ଘେର ଯେ ସ୍ୱର୍ଣ୍ଣମୟୀ ଆଭା ?
ଅନ୍ତରେ ଅନ୍ତରେ ଫିସ୍ତୁ ନ ବହିବ ପ୍ରେମର ପ୍ଲାବନ ?
କାହିଁ ପଥ, କାହିଁ ଗଥ ବନ୍ଧୁ ?
କେଉଁ ପଥେ କଲେ ଗତ ଶେଷ ହେବ ଏହି ଅଭ୍ୟାଗୃହ,
ମଣିଷ ସଂସାରେ ଏହି ରାକ୍ଷସର ଲୀଳା ?
ଶଶୀଥର କୃଷ୍ଣ କୋଳେ ରୌଦ୍ର ମୁହାଣୀ ଉଦ୍ଭ୍ରତ ଉରସେ
ମହାତ୍ମାର ବିରାଟ ଅନ୍ତରେ
ଲଭିଥିଲା ସ୍ଥିତି ଏହି ସାତ୍ତ୍ୱିକ ବିପ୍ଳବ……
ମହାତ୍ମା ଦେଖିଲେ ସ୍ୱପ୍ନ……
ଦୀର୍ଘପଥ ପଡ଼ିରହେ, ଧୂଳିକଣା ଯାହାର କଣ୍ଟକ,
ଜନ୍ମାନ୍ତ୍ରି ହୃଦୟେ ଦାସ ହିଂସ୍ର ଜନ୍ତୁ ବିକଟ ଗର୍ଜନେ…

ସେଇ ପଥର ଦ୍ୱାର ଦେଶେ ବୃଦ୍ଧ ଏକ, ଜୀବନର ଶେଷଦୃଶ୍ୟ ଥିଲା !,
କାହିଁ ଯିବ କାହିଁ ଯିବ ବୃଦ୍ଧ ?
ଘୋଟେ ଯେ ମୃତ୍ୟୁର ଯନ୍ତ୍ରଣା !
ହସି ଉଠେ ବୁଦ୍ଧ ଧୀରେ ହସ୍ତ ଯା'ର ଦ୍ୱିତୀୟାର ଜହ୍ନ;
ତନୁ ମୃଦୁ ଲଜ୍ଜାରେ ଗମ୍ଭୀରେ—ଆଖିକର ଲହୁରେ ଛଳ ଛଳ
"ଆସ ସାଥି, ଦେଖାଅ ଆଲୋକ ।"
ଏ କି ଆଚମ୍ବିତ !
କାହୁଁ ଶ୍ୱେତ ରଶ୍ମିର ସ୍ଫୁରଣ !
ହୋଇଯାଏ ପଥ ସୁନା, ଅତି ଶାନ୍ତ ଅତିବ କୋମଳ;
ସ୍ଥବିରର ଆଲିଙ୍ଗନେ ହଂସକୁ ନାଅନ୍ତି ନଭମି,
କଣ୍ଟକ ଆଘାତେ କାହୁଁ ବୁଦ୍ଧ ପାଦୁଁ ଝରେନା ତ' ରକ୍ତ !
ସ୍ୱପ୍ନ ଯେ ଏ ଲଭି···
ଉଠନ୍ତି ମହାତ୍ମା ଜାଗି, ଚାହେଁ ନେତ୍ରମ ଆଲୋକ ସୀମାର

× × ×

ମହାତ୍ମାଜୀ ଯିବେ ଏକା ଉପଦ୍ରୁତ ଅଞ୍ଚଳ ନୋଆଖାଳି
ପଦବ୍ରଜେ ବୁଲି ବୁଲି ଗାଁ ଗାଁ କରିବେ ଦର୍ଶନ,
ଦେଖାଇବେ ପ୍ରେମର ଆଲୋକ,
ନିଜର ସଂସ୍ଥାନ ନିଜେ ନିଜହାତେ ସମାପନା କରି
ଲଭି ସଭ୍ୟ ଗୃହେ ମଥା ଗୁଞ୍ଜିବେ ଆଦରେ ।
କାନରୁ କାନକୁ ବାର୍ତ୍ତା ଖେଳିଗଲା ଧମକେ ପଲକେ,
ଆଶ୍ରମବାସୀଏ ହୋଇଲେ ସ୍ତମ୍ଭିତ, କମ୍ପିତ ।
ଧୂଳି ରଜେ, ପଲ୍ଲୀ କୋଳେ, ଦୂର ଦିଗି କାଦେନେ କପଟରେ
ବାୟୁ ମଣ୍ଡଳର ସ୍ତରେ ସ୍ତରେ,

ଅକାଶର ନୀଳ କୋଳେ, ତାରକା ଓ ପୂର୍ଣ୍ଣ ଚନ୍ଦ୍ର ଗ୍ରହେ
ମିଳିଲ ଏ ବାର୍ତ୍ତା ପ୍ରତ୍ୟୁନ ।
ଏ କି ପୁଣି ବରଷ ପରୀକ୍ଷା !
ବିଂଶ ଶତାବ୍ଦୀର ପାଇଁ ଏକି ପୁଣି ଅଭିନବ ଡ଼ାକ !

×  ×  ×

ସାବଧାନ ଅଗ୍ରସର ବାଣୀ
ପ୍ରାର୍ଥନା ସଭାରେ
ପ୍ରାର୍ଥନାର ହୁଏ ଶେଷ—
ଏବେ ନେବେ ମହାତ୍ମା ବିଦାୟ···
ରାତ୍ରିର ମଧ୍ୟାହ୍ନୀ··· ···
ମୁଖେ ଫୁଟେ ପ୍ରଦୀପ୍ତ ଅଙ୍କୁଶ·····
ସାଥୀଙ୍କର ମୃତ୍ୟୁ ମୁଖେ ଅନ୍ତ୍ରୀଳି ଅଗ୍ନିର କାହାଣୀ ।
ନାଠକାରେ ଦେଲେ ଯାଦ ମହାତ୍ମାଙ୍କୁ ହସ ହସ ମୁଖେ···
ନୀଳ ନୀର ବକ୍ଷ ଫାଟି ଗଡ଼େ ଜଳ ନବ ଅଶ୍ରୁ ସ୍ରୋତ
ବିଂଶ ଶତାବ୍ଦୀରେ ପୁଣି ସମାଧିସ୍ଥ ମୃତ ଅବ୍ଧି !
ସାଥୀଏ ରହିଲେ ଶୁଣି ଲୋକଙ୍କର ହାହା ଧାରପର୍ଣ୍ଣେ—
ଲିଭେ ନାହିଁ ବିଶ୍ୱବନ୍ଧୁ ମେଘ କୋଳେ ଗୁଡ଼ିକର ଧାମ,
ତଥାପି ରହିଲେ ଶୁଣି ଅଶ୍ରୁ ବାଷ୍ପୀଏ·····
ବନ୍ଦେ ଶୁଣି ମାନବ ଜସ ର···
ବିଶ୍ୱବନ୍ଧୁ ଯାଏ ଲିଭି ଜୀବନର ଶେଷ ଦୃଷ୍ଟି ରେଖା···
ଲିଭିଯାଏ ଶେଷ ଦୃଷ୍ଟି ରେଖା !
ନା ନା ରେ ଦୁନିଆ ଦେଖ, ନଜରା ଯେ ସୁନା ହୋଇ ଯାଏ
ନଭନୀଳ ନୀରବ ଉରସେ !

# ନିବେଦନ

( ୧ )

ଇନ୍ଦ୍ରିୟ ସକଳ ଯେବେ ହେଲେ ଅତ୍ୟାଗ୍ରହୀ
ଜଡ଼ ବସ୍ତୁ ନୀଚ ସ୍ୱାର୍ଥେ ହେଲେ ଅନାଗ୍ରହୀ
ମନ ଯବେ ହେଲା ପରାଧୀନ
ଆତ୍ମା ଠାରୁ ବହୁ ଦୂରେ ହୁଏ ମୁହିଁ କେତେ ଘୃଣ୍ୟ ହୀନ !

( ୨ )

ଆତ୍ମା—ସେ ଯେ ତୁଳିକାରେ ଶିଳ୍ପୀର ପରଶ !
ଆତ୍ମା ମୁଁ କାପର ହେବ ତାରେ ଗର ବଶ !
ତା ଅନ୍ତର ବିରାଟ କଳ୍ପନା
ମୋ ନେଇ ଫୁଟିବ ଆହା ! କରୁ ସାଧୁ, ସବୁ ବିଡମ୍ବନା !

( ୩ )

ହେ ଇନ୍ଦ୍ରିୟେ ! ବନ୍ଧୁଗଣ ! ତେଜ ଦୁର୍ବୃଣ,
ସୃଷ୍ଟିକର ପରସ୍ପରେ ପ୍ରୀତିର ବନ୍ଧନ ।
ସୁପଥ ଯେ ପୀରିତର ପଥ'
ସେ ପଥ ହରାଇ କିଂପା ହରାଉଚ ନିଜର ମହତ୍ତ୍ୱ ?

( ୪ )

ଲୋମ ବିନା ତୂଳିକାର ଅଛି କି ଉପାୟ ?
ନୁହେଁ କି ଗୋଟିଏ ବିନା ଅନ୍ୟ ନିରୁପାୟ?
ଲୋମମାନେ ନ ହୋଇଲେ ଏକ
କାହିଁ ଶିଳ୍ପୀ କାହିଁ ତୂଳୀ; କାହିଁ ଅବା ଚିତ୍ର ରୂପରେଖ ?

( ୫ )

ଅମେ ବଧୂ, ସ୍ରଷ୍ଟା ହାତେ ଯଥା ଚନ୍ଦ୍ର ତାରା,
ଆମ ହାତେ ହେବ ସୃଷ୍ଟି ରୂପ-ଗନ୍ଧ-ଶାଳା,
ରୂପଲାଗି ଆମରି ଜନମ,
ଦେଖରେ ରୂପର ସ୍ୱପ୍ନ ! ହୁଅ ନାହିଁ କୁଣ୍ଠିତ, ନିର୍ମମ !

( ୬ )

ତୁମ୍ଭେ ହେବ ମୋର ବଣ ମୁଁ ହେବି ତୁମର,
ଖେଳିବା ଜୀବନେ ହୋଇ ଏକ ନିରନ୍ତର,
ଏକ କଣ୍ଠେ ଗାଇବା ଗୋ ଗାନ,
ଊଷାର ଅରୁଣ ସମ ବିକଶିବେ ହୃଦେ ଭଗବାନ ।

( ୭ )

ଆମ ଲାଗି ତାଙ୍କ ବାଣୀ ତାଙ୍କର କଳ୍ପନା,
ଶୁଣି ଶୁଣି ନବବଧୂ, କରମେ ଉନ୍ମନା
ହେବା ଅମେ ଜୀବନରେ ଚିର;
ସ୍ରଷ୍ଟାର କୋଳରେ ଶେଷେ ହେବା ଅମେ ଅନନ୍ଦେ ଅଧୀର,

( ୮ )

ଭୁଲିଯାଅ, ଭୁଲିଯାଅ, ଅତୀତ ହେ ସଖା ,
ବିରାଟ ବ୍ୟକ୍ତିତ୍ୱ ତବ ଯତ୍ନେ କର ରକ୍ଷା,
ଚୂର୍ଣ୍ଣ କର ଲୌହ ଶୃଙ୍ଖଳ,
ଆସ ହେ, ଆସ ହେ ବଧୂ, ମୁଖେ ମୁଖେ ଫୁଟାଇ କମଳ ।

—×॰୦॰×—

## ଅତୀତର ଗୋଟିଏ

# ଶୁଭ ମୁହୂର୍ତ୍ତ

କବିର ତୁଳନା ମୂଳେ   ଯେ ପାଇଛନ୍ତି ଚିରଦିନ ପୂଜା
ଅତନୁ ସେ···କାମଦେବ···
ମଣିଷ ଜୀବନେ ତା'ର ମନଲୋଭା ପ୍ରେମ ଅଭ୍ୟନ୍ତର
ଭୋଗିଛି, ଲେଖିଛି କବି,
ଭକ୍ତ ଅବା ଭକ୍ତେ କବି   ଦିଏ ତା'ରେ ଦେବତାର ସ୍ଥାନ
ଅତନୁ ସେ—ତଥାପି ସୁନ୍ଦର !
ହାତରେ ଫୁଲର ଧନୁ···   ପଞ୍ଚଫୁଲ—ଅଭିନବ ଶର,
ଯୌବନର ପ୍ରିୟ ସହଚର ।

    ଅଜ୍ଞାତେ ଯୌବନ ଯେବେ   ସଜାଇଲା ଏ ଦେହେ ଆସନ,
    ଆସିଲା ବି କାମଦେବ,
    ଉଡ଼ାଇ ଚଟୁଳ ତା'ର   ଚିତ୍ରଗନ୍ଧ-ଶଫରୀ ଲାଂଛନ ।
    ଅଷ୍ଟାଦଶ ଶତାବ୍ଦୀର ଭାରତୀୟ ପରି
    ଦାସତ୍ୱ ବରଣ କଲି   ନରକରେ ଦେଇ ବେନି ପାଦ ;

ମନେ ପଡେ ସେ ଯୁବତୀ···   ପବନ ସେ—ସତେ କି ତୁଳସୀ !
ତାହାର ଅନ୍ତରେ ଥିଲା   ଦେବତାର ନିବିଡ ବିକାଶ;
କିନ୍ତୁ ମୁଁ ଉନ୍ମତ୍ତ ମନ—
ଇଂରାଜ ମୁକୁଟ ତଳ   ରାଜା ଅଉ ଜମିଦାର ପରି···
ଆଖିରେ ପୂରିଲା ମୋର   ନାରକୀୟ ଉତ୍କଟ ଲାଳସା—
ହୃଦୟେ ଜଳିଲା ନିଆଁ
କେଉଁଝର ପର୍ବତରେ ବୈଶାଖୀର ଦାବାନଳ ପରି—

ଏପରି ଘଟିଲା ଦିନେ—
ସତୀତ୍ୱ ବା ସ୍ୱାଧୀନତା— ଯା' କିଛି ବା' ନାରୀର ମହତ୍ତ୍ୱ
ସବୁଥିକୁ ଦେଇ ଅପମାନ,
ପୂର୍ଣ୍ଣିମାର ଶେଷଯାମେ ଯୁବତୀରେ କଲି ରତି ଭିକ୍ଷା !
କିଂତୁ ସେ ସୁନ୍ଦରୀ ପ୍ରାଣେ ତୁଳସୀର ଅପୂର୍ବ ସୁଗଂଧ ।

ସେ ଶୁଭ ମୁହୂର୍ତ୍ତିଟିରେ କୋମଳ ଭର୍ତ୍ସନା
ଅଜ୍ଞାନୀରେ ଜ୍ଞାନ ଉପଦେଶ,
ନ ଭୁଲିବି ଜୀବନରେ··· ସେ ମୁହୂର୍ତ୍ତି ଜୀବନର କାମ୍ୟ ।

ସେ ଦିନ ଜାଗିଲା ମୋର ସିପାହୀ ବିଦ୍ରୋହ
ବିପ୍ଳବର' ଅନ୍ଦୋଳନ ହେଲଣି ବି' ଶେଷ···

ତଥାପି ରହିଛି କ୍ରୂର ବିଚ୍ଛେଦ ବେଦନା—
ହିଂସା ଅଉ ଅହିଂସାର ଦ୍ୱନ୍ଦ୍ୱ ଲାଗି ରହେ···
ଏହି ଦୁର୍ବଳତାଟିରେ ଦେଇ 'ପ୍ରେମ' ମାର୍କା
ମଣିଷତ' ହୁଏ କବି, ହୁଏ ବି' ପ୍ରେମିକ !

ହୋଇ ଆସେ ରାତି ଶେଷ···
ମାଳବ୍ୟ ଲଲାଟେ ଦୀପ୍ତ ଶୁଭ୍ର ଟିପା ପରି
ପବନ ପ୍ରଭାତୀ ଫୁଟେ ପୂର୍ବଦିଗ ନୀଳ ଅଙ୍ଗନରେ

( ଏଠାରେ ପ୍ରତ୍ୟେକ ପ୍ରେମିକଙ୍କୁ ସମାଲୋଚନା କରିବା ମୋର ଉଦ୍ଦେଶ୍ୟ ନୁହେଁ । ମୋର କହିବାର ଅର୍ଥ ଅନେକ ଏଇ ଧରଣର ଅଛନ୍ତି । ଯେଉଁମାନେ ପ୍ରେମର ଦାସ ନୁହନ୍ତି—କାମର ଦାସ । )

—୦—

# ଆଲେଖ୍ୟ

— ପ୍ରାଥମିକ —

ହେ ରୂପସୀ, ହେ ମାନୁଷୀ ! ନୁହଁ ତୁମେ ମେନକା ଉର୍ବଶୀ;
କଳ୍ପନା ନୁହ ଗୋ ତୁମେ, ଅତି ଘନ ବାସ୍ତବର ଦସୀ
ତୁମ ରୂପେ, ତୁମର ଅନ୍ତରେ;
ତୁମର ଏ ଲୀଳାଭଂଗୀ,—ବକ୍ଷ ଉରେ ଘନ କଂପନରେ;
ଉଠାଚି ହେ ଲଳନା ଛନ୍ଦସୀ,
ଧର୍ଣୀର ନବୀଢ଼ ପ୍ରିୟ, ଯଥା ଶ୍ୟାମା ନନ୍ଦତା ଅତସୀ,
ହେ ରୂପସୀ, ଅଗୋ ହେ ମାନୁଷୀ ।

— ସାମୀପ୍ୟ —

ତୁମର ଚିକୁର କୃଷ୍ଣ-ଘନକୃଷ୍ଣ ଯଥା କୁହୁ ନିଶି,
ଶୈବାଳ କୋମଳେ ପୁଣି ତରଙ୍ଗର କୁଟୀଳତା ମିଶି,
ସୃଷ୍ଟି କରେ ସାଗରର ମାୟା,
ଅଳକ ଛାୟାର ଲୀଳା ଜ୍ୟୋସ୍ନା ରଚେ ବିସ୍ତାରି ତା’ କାୟା!
ସୀମନ୍ତର ରେଖା, ଗୋ ବିଦୂଷୀ,
ଛାୟାପଥ ସମଦର୍ଶେ, କିନ୍ତୁ ସ୍ପଷ୍ଟ ବିବେକ ବିଧ୍ୱଂସୀ,
ହେ ରୂପସୀ, ଅଗୋ ହେ ମାନୁଷୀ ।
କର୍ଣ୍ଣଶିରେ ମେହେଦିବ ଚିକୁରର, ଚକ୍ଷୁ ରହେ ସ୍ଥିର;
ଲୋଟଣୀ କୁଞ୍ଚାର ତଳେ କୃକାଟିକା—ଦର୍ଶେ କି ଗମ୍ଭୀର !—
ଗୁପ୍ତ ପୁଣି କେତେ ଯେ ରହସ୍ୟ !—
ବେପଥୁରେ ନିମଜ୍ଜନ !—ଦୃଷ୍ଟି, ଚିତ୍ତ ହେଉଛି ଅବଶ,
ଶିରଭୂଷା, ହେ ନାରୀ, ନାରୀର,

କନ୍ଦର୍ପ କୃପାଣ ଏ ଯେ ଶୁଭ୍ରଦଳେ କୃଷ୍ଣ କବରୀର !
ଧନ୍ୱୀପଳ, ହେ ସୁନ୍ଦରୀ ଶିର ।
ଅକୁଞ୍ଚିତ ଭାଲପଟେ ବନ୍ଧୂଳିର ରକ୍ତ ସରୁ ଟୀକା
ଭ୍ରୂଯୁଗର ସମକୂଳେ—ଫେଣ ନାଗିନସ୍ଥ ଅଗ୍ନିଶିଖା
ଯିବ ଯଥା ଉଷା ପ୍ରାଚୀ ତଟେ,
ଉଷାର ସର୍ପଣ ଗୀତ ନିର୍ବଳସ୍ତୂମ୍ଭଳ ଉଠେ ରଟେ;
ଅବରୁଦ୍ଧ ଦ୍ୱାରର କୁଞ୍ଚିକା;
ଯୌବନ ଦମ୍ପତ୍ତିର ତାହା—ସାର୍ଥୀର ଉନ୍ମୁକ୍ତ ବୀଥିକା,
ହେ ରୂପସୀ, ଅଗୋ ସୌରଭକା ।
ଛନ୍ଦ ବାଳ ଟଙ୍କୀ ଲତା ତଳେ ପୁଣି ପକ୍ଷ୍ମ କୁଂଜଲତା,
ଦୋଳେ ରକ୍ତନୀଳ ପଦ୍ମ ଶଫରୀର ବିଦ୍ୟୁଚ୍ଚଞ୍ଚଳତା,
ବେଣୀ କୋଣେ ନନ୍ଦନୁ କଟାକ୍ଷ,
ଖୋଲିଦଏ ହୃଦୟର ଗୁପ୍ତ ଅତି ନିର୍ଜନ ଗବାକ୍ଷ;
ବାସରର ପଦ୍ମ ପ୍ରସ୍ଫୁଟିତା
ଭ୍ରମର ଯୁଗଳେ ମତ୍ତ, ଦୃଷ୍ଟି ଖୋଲି ନ ଅଛି ଛକ୍ତତା.
ପଦ୍ମମୁଖୀ, ଅଗୋ ସ୍ୱର୍ଣ୍ଣଲତା ।
ରଜନୀଗଂଧା ଗୋ ଫୁଟେ ଖଣ୍ଡାଧାର ଋଜୁ ନାସିକାରେ;
ମଳୟ ଫୁଟାଏ ଲୁଟି ଅଶୋକର କଳିକା ଅଧରେ;
ଓଷ୍ଠ ଫୁଟେ ବଳନ୍ତ ପ୍ରଶାନ୍ତ,—
କୋକନଦ ଦଳେ ସେ କି ଗଗନର ନାଣି ଅନୁରକ୍ତ !
ଅତି ଶାନ୍ତ ନମ୍ର ଚିବୁକରେ
ବକ୍ଷୋଜ ପତନୀ ଲଭେ ତ୍ରସ୍ତବମ୍ବ, ସିକ୍ତ ପୁଲକରେ
ହେ ଷୋଡଶୀ, ଅତି ବ୍ୟଗ୍ରଭରେ ।

କର୍ଣ୍ଣେ ଦୋଦୁଲ ଅବତଂସ—ଛବି ତା'ର ଗଣ୍ଡର ଦର୍ପଣେ,
ଅଧର ମୋ କଂପି ଉଠେ···କି ଅଛୁ ଯେ ସେ ହେମ ଅଙ୍ଗନେ !
ଚଂପା କଳି ଅହା ! ଓଷ୍ଠ ଟୁଟେ···
ଶେଫାଳି ଫୁଟିଚି ଦେହେ··· ମନ୍ଦମନ୍ଦ ଗଂଧ ତାର ଛୁଟେ···
ରକ୍ତ ଜବା ମର୍ମ ଅଂଗନେ
ଫୁଟିଚି କପଟ ଗାତ ! ସେ ଲୀଳାର ପ୍ରାଣ ମୋର ହାଣେ,
ହେ ମାନସୀ, ଅଗୋ ବରାଙ୍ଗନେ ।

ସ୍ଫଟିକ ବିମଳ କଣ୍ଠ—ଝୁଲେ ତାର ନୀଳଶାଢ଼ୀ ପ୍ରାନ୍ତ—
ଶିଳ୍ପୀର ସୃଷ୍ଟିକଳା—ଯୁବ ଚିତ୍ତ କରୁଚି ଉଦ୍‌ଭ୍ରାନ୍ତ···
ହେମ ଗଳେ ହେମ ସରୁ ହାର—
ହଜାଇ ଉପମା ସବୁ କବି ପାଏ ତାର ପୁରସ୍କାର···
ସବୁ କଣ୍ଠି ଶିରେ ଗୁରୁକାନ୍ତ
କେଶେ ରଖେ ଗୁମ୍ଫ କରି କେତେ ଚିତ୍ତ ବେପଥୁ-ଅଶାନ୍ତ !
ହେ ଯୁବତୀ, ଲଳନା-ଦୃଷ୍ଟାନ୍ତ ।

ଉରଜ ବଳୟ ମୂଳ କୁଣ୍ଡିତଳୁ ହୁଏ ଅନୁମାନ,
ସୁଗୋଲ ମୃଣାଳ ବାହୁ—ପ୍ରାନ୍ତେ ଯା'ର କୋକନଦ ସ୍ଥାନ,
ଅଂଗୁଳିରେ ସ୍ୱର୍ଣ୍ଣ ଚଂପା କଳି,
ପଦାପ୍ରାନ୍ତ ପର୍ଯ୍ୟନ୍ତ ବେହରଣି ଛନ୍ଦର କାକଳୀ
ପାଦପଦ୍ମେ ଲକ୍ଷା ଗନ୍ଧସ୍ନାନ,
ଅଶ୍ଳେଷ ପିପାସା କରେ ଚିତ୍ତ ଯାଚେ ମୁକ୍ତ ହାତେ ଦାନ
ହେ ସୁନ୍ଦରୀ, ଯୁବକ-ନିର୍ବାଣ ।

— ସମାରୋହ —

ରୂପରେ ନିବିଷ୍ଟ ଚିତ୍ତ···ଲଭିଗଲି ସ୍ମିତ ପ୍ରତିମାର
ବିନ୍ଦୁ ବିନ୍ଦୁ ସୁଧାକଣା କଲା ମୋର ପ୍ରାଣେ ଅଭିସାର,
ଦୀପ୍ତ ହେଲି ଉଜ୍ଜ୍ୱଳ ଆଲୋକେ
ବଳିଷ୍ଠ ବ୍ୟକ୍ତିତ୍ୱ ଲଭି, ବନ୍ଧ ନୋହି କାମର ନିର୍ମୋକେ,
ଲକ୍ଷ ଦୀପ ସୃଷ୍ଟ ଅଂଶୁ ଜାଲ
ଦେଖି ଦୂରେ ହେଲି ମତ୍ତ ଭୁଲିବାର ପଥେ ଅସମ୍ଭାଳ,···
ଦୀପ୍ତିହୀନ···ସତେ କି କାଙ୍ଗାଳ !

— ନବଦୃଷ୍ଟି —

ହେ ରୂପସୀ, ହେ ମାନୁଷୀ ! ନୁହଁ ତୁମେ ମେନକା ଉର୍ବଶୀ,
କଳ୍ପନା ନୁହଁ ଗୋ ତୁମେ; ନୁହଁ ତୁମେ କନ୍ଦର୍ପ ବନ୍ଧଣୀ;
ଅହା ! କି ଏ ଅପୂର୍ବ ଜୋଛନା
ଏଇ ଜ୍ୟୋତ୍ସ୍ନା ସାଥେ ମିଶି ପ୍ରାଣ ମୋର କରୁଚି ଜଳ୍ପନା !
ତଥାପି ହେ ଲଳନା ଛନ୍ଦସୀ,
ଧରାର ନିବିଡ଼ ସ୍ପୃହା, ଯଥା ଶ୍ୟାମା ନନ୍ଦିତା ଅତସୀ,
ହେ ମାନୁଷୀ, ଆଗୋ ହେ ରୂପସୀ !



## ମାତାପ୍ରତ

ଫୋଡଦଅ,' ଫୋଡଦଅ ।
ଅଂଚଳେ ସେ ଦେହଟିକୁ ଢାଙ୍କି ଦଅ ଶୀଘ୍ର ଢାଙ୍କି ଦଅ।
ପମୀର, ଚନ୍ଦନ,ଫୁଲ, ଯାହା ଖୁସି ଦଅ ତହିଁ ଢାଳି,
ଢାଳି ଦଅ ଶବ ପରେ ନୟନରୁ ତବ ନେତ୍ରହବାରି;
ଗାଇବାର ମନ ଯଦ ଗାଇଦଅ, ପଦେ ଗାଇ ଦଅ
ପରାଣ ଜଳୁଲା ଗୀତ,ଗୀତ ସ୍ୱରେ ଧୀରେ କହିଦଅ,
“ଧନ, ତୋତେ ଭଲପାଏଁ···ତୁହି ମୋର ଧରିର ରତନ ”
କାନ୍ଦବାଠା ନୁହେଁ ଭୁଲ—ହସ ପର କାନ୍ଦ ଯେ ଜୀବନ।
ଢାଙ୍କି ଦଅ, ମାଟି ଢାଙ୍କି ଦଅ,
ତୁଟେନ ତ' ମର ନ ନାରୀ !—ପୋଛି ଦଅ,ଅଶ୍ରୁ ପୋଛି ଦଅ ।
ଗୃହେଁ ମୁଁ ହୋଇଚ ଠିଆ···ଗୃହେଁ ହସେ ନୋଳିଆ ଆକାଶ···
ସଂଗୀତ ଗାଉଛି ପକ୍ଷୀ···ଫୁଲ ଦଏ ଛୁଟାଇ ସୁବାସ···
ମର୍ମରେ ପବନ ଧୀରେ ଅଶ୍ୱତ୍ଥର ପତରେ ପତରେ···
ବରାଠେ ଏ ନିମନ୍ତ୍ରଣ ନ ନେବିବ ନାରୀ କ ଆଦରେ ?
ପୋଛ ଦଅ, ପୋଛି ଦଅ···
ଜୀବନୁଁ ମରଣ କାଳି ପୋଛି ଦଅ ଅଗୋ ପୋଛି ଦଅ ।

—o—

## ଦେହଲୀ

ପୋଡି ଦେଇ ପଦ୍ମବନ ପକ୍ୱ-ଧାନ-ସୁନା-ମଗୁଣିର
ଅଂଗେ ଭରେ କୋମଳତା ପଦ୍ମର ଯେ କୋଠଧନ ଶିର ।
ଗଡ଼ିଲାଣି ଝେଠଦନ···ଗୃହପିଳୁଏ ଫେରିଲେଣି ଘରେ···
ବହୁତ ସୁନାର ସୁଅ ସରଳ ଏ ପଲ୍ଲୀପଥ ତଳେ···

କଅଁଳ ତୀର୍ଥୀଙ୍କ ଗର୍ଭ-ପାତ୍ର ହୋଇ ଦରିଦ୍ରୀ ଦୁଆର
ପଡନ୍ତୁ ଅଗଣାଟିରେ···ନମ୍ର ଉଷ୍ଣ ଶାନ୍ତ ସ୍ପର୍ଶ ଭାର···
ଦେହଳୀରେ ବସେ ନାରୀ···ଲୁଗାଯାଏ କବରୀରୁ ଖସି···
ଚରମ ଓ କବରୀରେ ଖେଳେ ଗର୍ଭ ଟୁଲକରେ ରସି···
ପାଟୁଳିରେ ହେମଗଣ୍ଡ··· ଦୃଷ୍ଟି ପଥେ ନୀଳ ଅଗ୍ନି କୋଣ···
ତୋଳାରେ ସ୍ଥିରତା ତୀକ୍ଷ୍ଣ···ପଲକରେ ଅଚଞ୍ଚଳ ସ୍ପନ୍ଦ···
ତାହାରେ ଚାହିଁଛି ନାରୀ ? ମଗୁଣିର-ଗନ୍ଧ ଗେଣ୍ଡୁ ଫୁଲ ?
ଅବା ନୀଳ ଦିଗ୍ବଳୟ ?···କେଉଁ ଦୂରେ ଲଭି ଅଛୁ କୂଳ ?

ଅବା ଦେଖେ ପ୍ରିୟ ମୁଖ ?···ପଢ଼େ ଭୁଞ୍ଜି ଚାହୁଁ ଇତିହାସ ?
ନିବେଦନ ଗୁଚ୍ଛେ ଅବା କରେ ହୋଇ କାମ-କିଣାଦାସ ?

କି ଗୀତ ବାଜୁଛି କାନେ ?···'ରଙ୍ଗିଣୀ'ର ସମର ସଙ୍ଗୀତ ?
ଅବା ଶୁଣେ କଲିକତା ହା ହା କାର ହୋଇ ଭୟଭୀତ?

ନିକଟେ ଥାନ୍ତି କି ତାର !···ଦେଖିଥାନ୍ତି କଭୁର ସିନ୍ଦୂର
ଦୁଅନ୍ତା ବା ବୁଝି କିଛି ଜାଣି ହେବ ହେଲେ ଏତେ ଦୂର ?

ଅଜଣାରେ ସବୁ ଜଡ଼େ ତଥାପି ମୁଁ ଏତିକି ଜାଣିଛି
ମରମ ପରଶୀ ଏକ ଚଳ ଶବ୍ଦେ ନାରୀଟି ଭୁଲିଛି···

ସେ ହେଉ ସୁଖ ବା ଦୁଃଖ···ସୁନା, କଂସା,ତମ୍ବା ବା ପିତ୍ତଳ
କାହାର ଗୋଟାକ ସ୍ପର୍ଶ ନାରୀ ଆଜି ହୋଇଛି ପାଗଳ ।

ଆଜି ମୁଁ ଦେଖୁଛି ଚାହିଁ—ମଣିଷର ସୁନ୍ଦର ସବଳ
ଜୀବନ-ଝରଣା ବହେ ଅଚଞ୍ଚଳ କେବେ ବା' ଚଂଚଳ ।

ମୁକୁଳିଛି ବହୁଦିନ ବହିଛନ୍ତି ସ୍ରୋତେ ବଧବାଡ଼···
ମାନି ନାହିଁ କିଂତୁ ତାହା ଗତି ଏହି ସ୍ରୋତର କବଳ ।

ପ୍ରିୟଙ୍କୁ ଦେଖିଲେ ହସ, ନ ଦେଖିଲେ ଅଶ୍ରୁର ଝରଣା,
ନିଅଟ ଧାଗର ସ୍ୱପ୍ନ···ସେହୁ କାମ୍ୟ—ନୁହେଁ ବଡ଼ମ୍ବନା ।
ଏ କାଳେ ନାରୀର ରୂପ—ଅହା, ଦଶେ କେତେ ସ୍ତୁତିର !
ହେବ ସେ ନୀରବ ଲଗ୍ନେ ଜୀବନର ସାଥୀ ମୋର ଚିର ।

—o—

## — ଭରତ —

ସରଗରୁ ପୁଷ୍ପମାସ ଶୀତପଡ଼େ ଝର
ଭୁବନରେ ଖେଳିଯାଏ ମଧୁର ଲହରୀ,
ଶୀତବେଳ ତାତୁଟିକ ଭାବ ଭଲ ଲାଗେ,
କନକ ସପନ କେତେ ମାନସରେ ଜାଗେ ।
ମଫସଲ ବାଟ, ଘାଟ, କ୍ଷେତ ବା ପଡ଼ିଆ
ଜୀଇ ଉଠେ ଅଜା ହୋଇ ମନ ମତାଣିଆ ।
ଝଙ୍କ ଝଙ୍କ ବଳଦର ଗୁଳିବା ଶବଦ
ଠେଙ୍ଗ ଠେଙ୍ଗ ଘାଗୁଡ଼ିର ଛଣା ମକରନ୍ଦ;
ଗଗନରେ ଉଡେ ଧୂଳି, ଖେଳେ ହୋଇ ଛବି,
ରେଣୁରେ ରେଣୁରେ ପ୍ରାଣ ଆଶା ଭାଷା ବହି ।
ଗୋଡ଼ାଇ ବଳଦ ବାଟେ ଗୁଳୁଚି 'ଭରତ'
ଗୁଳ୍ପି ଗୁଳ୍ପି ମାଂସପେଶୀ ନାଚୁଛି ନିରତ,
ଗୋଡ଼ ହାତ ପେଟ ପିଠି ଧୂଳି ବଲବଲ,
ମାଟିର ମଣିଷ ସେ ତ' ଅଜ ଅବିକଳ;
ବଳଦକୁ ପିଟିଦଏ ପାହାରେ ପାହାରେ,
ଅଂଗକୁ ବଳଦ ଟିକେ ନାଚ ନାଚ ଗୁଳେ;

ମନ୍ଦିରେ ଗାଏ ସେ ପଥେ ଯାତନା ସଂଗୀତ,
କୃଷାଣର ପ୍ରାଣରେ ଖେଳେ କୃଷାଣୀ ଭଙ୍ଗୀ ତ;
ପଟରେ ମୋଡ଼େ ଲାଙ୍ଗୁଡ଼ ଟା ହୁଁଉ ହୁଁଉ କହୁ
ତରକି ବଳଦ ଯାଏ କେତେଦୂର ଧାଇଁ ।
ଘର ପାଖ ହୋଇ ଅସେ ଘୁଡେ ଘୋର ରଡ
"ଦେଏଲୋ ଦେଏଲୋ, ଅନ୍ଧ ବାଉ ଭାଟି କାଢ଼ି"
ଜବାବ ନ ଶୁଣି ହୁଏ ଭାରି ବିରକତ
ପୁଣି ଘୁଡେ ଘୋର ରଡ଼ ନୋହି ନିଶଙ୍କତ;
'ହୁଁଅଁ ହୁଁଅଁ' ତେଣୁ କିଏ ଦିଏ ପ୍ରତିସ୍ୱର,
ବାଛୁରି ଶବଦେ ଯେହ୍ନେ ଗାଈ ପ୍ରତ୍ୟୁତ୍ତର ।
ଦ୍ୱିଗୁଣ ଉତ୍ସାହେ ମୋ'ଠ ବଳଦ ଲାଙ୍ଗୁଳ
ଧାଇଁ ଯାଏ ବେଗ ହୋଇ ଭରତ ଆକୁଳ ।
ଗାଆଁର ଗଳିରେ ଗଲା ଭରତ ମିଳାଇ,
ଧୂଳି କଂଚୁ ରହିଗଲା ଗଗନ ଜଡ଼ାଇ,
ଯାହାର ପଛରେ ଧାଇଁ ଭରତ କିଶୋର
ହୋଇଥିଲା ସେଠି ଭୁଲି ସପନେ ବିଭୋର,
ରହିଥିଲା ସେତେ ତାର ଉଠାଣି ବେଳକୁ,
ରହିଗଲା ଆକାଶରେ ଛୁଇଁ ମୋର ବୁକୁ ।
ଅଜଣାରେ ଗଲା ସୁନା ସପନେ ମିଳାଇ,
ମଣିଷ ସଂସାର ମୋତେ ନେଇଗଲା କାଢ଼ି,
ବୁଡିଲି, ଭାସିଲି କେତେ ସେ ସୁନା ଜୁଆରେ,
ପାଏ କି' ଖ' ରେଖା ତାର ଆଜ ମୋ ମନରେ
ସରଳ ଜୀବନେ ଭାସି ଆଜ ମୋ ଦୁନିଆ
ମନେ ଦିଏ ସୁଖ ଆଉ ଶାନ୍ତି 'ଅଦିନିଆ' ।

— ଦ୍ୱିତୀୟା —

ରହିଛତ' ସଖା ତୁମେ ସାଥି ଜୀବନର !
ବିପୁଳ ଉଚ୍ଛ୍ୱାସ ଶତ ଏଇ ଅନ୍ତରର
ଢାଳିଦିଏ ତୁମ ପ୍ରାଣେ···ଲଘୁ ହୁଏ ବ୍ୟଥା···
ତୁମେ ତ' ବୁଝିଛ ମୋର ଗୁପ୍ତ ଲଘୁ କଥା !
ତଥାପି ଏ ପ୍ରାଣ କାହିଁ କିବା ଉଦ୍ଦେଶ ଗୋପନେ
କହ ଉଠେ ସାଥି, ସାଥି ? ଅନ୍ୟର ଶରଣେ
ପଶିବାକୁ ମନ କାହିଁ ହୁଏ ଆକୁଳିତ ?
ସଂସାରର କୋଳାହଳେ ରହି ମୋର ଚିତ
କାହିଁ ହୁଏ ଏକୁଟିଆ ? ନାରୀ···ସତେ ନାରୀ···
ସମିଦ୍ଧ ସ୍ନେହ ସତେ ଅଛି ଶୋଣିତ ଗ୍ରହଣରୀ
ଧମନୀର କ୍ଷୁଧାତୃଷା ? ଦ୍ୱିତୀୟା-ଅଭାବ
ଜୀବନେ ମୁଁ ଥିକି କରେ ଗାଢ ଅନୁଭବ ।
ସୃଷ୍ଟି ଯଥା ରେଖାହୀନ ସ୍ରଷ୍ଟା ଅନ୍ତରର
ପୁରୁଷ ନାରୀର ତଥା, ନାରୀ ପୁରୁଷର ।

—·—

ଦ୍ୱିତୀୟା ପ୍ରତି

ଦ୍ୱିତୀୟାଗୋ, ଅନାଗତା ନବୀନା କିଶୋରୀ,
ନାରୀତ୍ୱର ଗଉରବ ଯେବେ କରେ ଧରି
ଧୀରେ ଧୀରେ ପାଦ ଚାଳି ଆସିବ ମୋ ଘରେ
ଶତ ଶଙ୍କା ବିକମ୍ପିତ ଜଡ଼ାଇ ଅନ୍ତରେ,
ଅନୁରୋଧ କରେଁ, ଚାହିଁ ଅଭୟ ନୟନେ
ଦେଖିବ ମୁଁ ଥିବି ରହି ତୁମର ପ୍ରାଙ୍ଗଣେ;

ନୁହେଁ ମୁ ରାକ୍ଷସ ଅବା ନୁହେ ମୁଁ ଦେବତା,
ଅଂଗେ ଅଂଗେ ଜଡ଼େ ମୋର ମଣିଷର ସତ୍ତା;
ଦେଖିବ ଯେ ହୃଦପୁରେ ସରଳ ଆସନ
ଥିବ ସଖି ତୁମ ପାଇଁ; କର ନିମନ୍ତ୍ରଣ
ତୁମକୁ ମୁ ହୋଇଥିବ ଅର୍ଦ୍ଧ ଅବନତ,
ଆସନ ନେଲେ ଗୋ ତୁମେ ରହିବ ମହତ ;
ଯେ ହୃଦେ ରହିଛି ଦୃଢ ସୃଷ୍ଟିର ଆସନ,
ନ ହେବ ତୁମର ସାଥି ତହିଁ ଅପମାନ ।

# ଶିଶୁ

ଶିଶୁଟିକୁ ଦେଖି ଭାବେଁ, ଧନ୍ୟ ତା ଜୀବନ,
ତା' ଜୀବନେ ସରଳ ଓ ରୁଚିର ନିକ୍ୱଣ,
ଭାବେ ନାହିଁ ସୃଷ୍ଟି-ତତ୍ତ୍ୱ ଜନ୍ମ ମୃତ୍ୟୁ କଥା—
ଅନୁଭବେ ନାହିଁ ଏହି ଆନ୍ଦୋଳନ ବ୍ୟଥା···
ଖାଏ, ଶୁଏ, ହସେ, ଖେଳେ—ବଡେ ତାର କାଳ,
ତା' ହୃଦେ ପ୍ରଥମା ଅବା ଦ୍ୱିତୀୟା ଜଂଜାଳ
ନ ମାଡେ ଅସନ କେବେ । ଏକାଳେ ଯୌବନ
ଉଗ୍ର ହୋଇ ଆସେ ମୋର କହେ, "ଅକାରଣ
ଭାବ ଏହି ଶିଶୁ କଥା, ଥିଲ ତୁମେ ଦିନେ
ସରଳ ଅବୋଧ ଶିଶୁ; ତମିର-ବିପିନେ
ବୁଲିଥିଲ ଦିନେ ଖୋଜି ଜୀବନର ପଥ—
ଆଜି ସେହି ପଥ ଲଭି କିପାଁ ନିଶକତ ?
ଜୀବନ ଯେପରି ସତ୍ୟ, ସତ୍ୟ ଏ ଯୌବନ,
ସତ୍ୟ ଓ ସୁନ୍ଦର ଏହି ନାରୀର ସପନ ।"

## ସେ ଦିନ ଓ ଆଜି

ଆଉ ଦିନେ ଥିଲା ଏହି ନାରୀର ସପନ;
'ନାରୀ'ର ସପନ ସେ କି ?—'କାମ'ର ରଞ୍ଜନ ।
ସେତେବେଳେ ଥିଲା ପ୍ରାଣେ ଉତ୍କଟ ପିପାସା,
ନାରକୀୟ ଅଭିଳାଷ—ରାକ୍ଷସର ଭାଷା;
ନ ଥିଲି ମୁଁ ବୁଝି ତେବେ ନାରୀର ମହତ୍ତ୍ୱ,
ନାରୀତ୍ୱର ଗଉରବ...ନିଜର ବି ପଥ
ଜାଣି ମୁଁ ନ ଥିଲି ତେବେ...ତମିର-ଅଞ୍ଜନ
ଥିଲି ତେବେ, ଥିଲା ନାହିଁ ପ୍ରଦୀପ ସପନ ।
ଶତ ଗଉରବ ଆଜି ନାରୀ ଧରି କରେ
ମୂର୍ତ୍ତିମତୀ ହୁଏ, ମୋର ସମ୍ମୁଖେ ଉଜ୍ଜ୍ୱଳେ;
ପ୍ରେମର ସଂସାର ଆହା, କି ସୁନ୍ଦର ଦିଶେ !
କେତେ ପୁଷ୍ପ, କେତେ ଝର, ନଦୀ ତହିଁ ମିଶେ ! !
ସେ ସଂସାରେ ମିଶେ ମୁହିଁ, ମିଶେ ମୋ ମଣିଷ,
ମିଶେ ତହିଁ ମଣିଷର ସୁଧା, ଆଉ ବିଷ ।

—×:○:×—

## ନାରୀ

ନାରୀ... ସେ ତ'  ଏଇ ଧରଣୀର...
ନାରୀର ଅନ୍ତରେ ଫୁଟେ ପୃଥିବୀର ମାତୃ ବ୍ୟଥା ଚିର...
ନାରୀର ନୟନେ ଛୁଟେ ବାରିଧାର  ଏଇ ଅବନୀର...
ଗର୍ଭରେ ଧାରଣ, ଆଉ ପାଳନର ସତତ ଜଂଜାଳ,
ସନ୍ତାନର ଅତ୍ୟାଚାର, ଦିବାନିଶି ଅତୃପ୍ତ କଠାଳ

ମାଆ ଯେ ଫୁଲଟିକେ ସ୍ନେହେ—ସେ ତ ଏଇ ପୃଥିବୀର ଧନ ···
ଧରଣୀର ଅଂଗ ନାରୀ—ମନ, ଅବା ହୃଦୟ, ସପନ···

ଧନ୍ୟ ମୋର, ଧନ୍ୟ ମୋର ସାର···
ନାରୀଠୁଁ ଧରଣୀ ବଡ଼—ପ୍ରାଣେ ଧନ୍ୟ—ପ୍ରୀତିର ସମ୍ଭାର···

ପୃଥିବୀ ସନ୍ତାନ ଅମ୍ଭେ ! ଧରଣୀର ଚିର ଚଣ୍ଡି ଧନ !
ଧରଣୀର ଗଉରବ, ଆସ ବନ୍ଧୁ, କରିବା କୀର୍ତ୍ତନ ।
ଧରଣୀ ଅନ୍ତରେ କାହିଁ ଭେଦାଭେଦ, ଉଚ୍ଚନୀଚ ଭାବ ?
ପ୍ରେମର ଜୁଆରେ, ବନ୍ଧୁ, କି ଲାଗି ହେବ ପ୍ରୀତିର ଅଭାବ ?

ଆସ ବନ୍ଧୁ, ମିଳାଅ ହୃଦୟ,
ମିଳାଅ ଲୁହରେ ଲୁହ, ସୃଷ୍ଟି ହେଉ ସୁନାର ନିଳୟ ।

— —

ତୁମ୍ଭେ ଥିଲ ଜଳଜଳ; ଥିଲା ଜ୍ଞାନ, ଥିଲା ମୋ ଚେତନା,
ଭଲ ମନ୍ଦ ଚିହ୍ନିବାର ଶକ୍ତି ଥିଲା, ଥିଲା ବି ପ୍ରେରଣା
ସ୍ୱର୍ଗପଥେ ଚାଲିବାର; ତଥାପି ମୁଁ ହେଲି ଭ୍ରମପଥ !
ତଥାପି କଲି ଭୁଲ, ପଥେ ଥାଇ ହେଲି ମୁଁ ବିପଥ !
ପ୍ରଦୀପ ଉଜ୍ଜ୍ୱଳ ଥିଲା, କିନ୍ତୁ ସେହି ମୁହୂର୍ତ୍ତିକ ପାଇଁ
କେ କଲା ଉତ୍ପାତ ତାକୁ ?—ଦେଲା କିଏ କୁହୁକ ଲଗାଇ ?
ନାହିଁ କି, ନାହିଁ କି, ପ୍ରିୟ ସେଥିଲାଗି ନାହିଁ କି ହେ କ୍ଷମା ?
କଳଙ୍କ ଲିପ୍ତ କି ହେଲା ସେଥିଲାଗି ଗୌରବ-ଗରିମା ?

··· ··· ···

ଅହା, କି ଗୋଲାପ ହସ, ଅହା, କି ଏ କୋମଳ ପରଶ !
କି ଦୀପ୍ତ ପ୍ରଦୀପ ଅଖେ ! ଆନନ୍ଦରେ ତନୁ କରେ ବଶ

ତାହାର ଏ ଶାନ୍ତ ବାଣୀ !…"ଜବଷ୍ଟ ଏ ସୃଷ୍ଟି ପ୍ରାଣେ ପ୍ରାଣେ
ଜ୍ୱଲ୍ ହୁଏ ବାରଂବାର—ସଂଗ୍ରାମର ସମ୍ମୁଖୀ ଦମାନେ
ହୋଇଥିଲେ ଭ୍ରଷ୍ଟ ପାର୍ଥ…" ପ୍ରାଣ ମୋର ହୁଅରେ ଜାଗ୍ରତ…
ଅନୁତାପେ ନୋହୁ ଦଗ୍ଧ ବର ନିଅ ତୁମ ଲକ୍ଷପଥ…
ମରଣ ଯେ କାଳେ ଆସି ଦେବ ତାର ନମ୍ର ଆଲିଙ୍ଗନ,
କାଳସ୍ରୋତେ ଅନପଥେ ଦେବତାର ପ୍ରୀତି ନିମନ୍ତ୍ରଣ;
କୁହରେ "ହୋଇଛି ସୁନା ଜୀବନଟି ଧରଣୀର କୋଳେ,
ଦେଖିଛି ପୃଥିବୀ ମୋର ପ୍ରେମ ଭରା ନୟନର ତୋଳେ ।"

—:o:—

## ନିବେଦନ

ମନେ କି ରଖିଛ, ବନ୍ଧୁ, ଯେବେ ଥିଲ ସ୍ରଷ୍ଟାର ସପନେ
ଏଇ ଯେ ଧରଣୀ ଦେଖି, କିପରି ସେ ବକ୍ଷର କଂପନେ
କରିଥିଲ ସ୍ରଷ୍ଟା ପାଦେ ମୂର୍ଦ୍ଧା ସମ ନମ୍ର ନିର୍ଜନା,
କରେ ଧରି ଅର୍ଘ୍ୟଥାଳୀ ନିବେଦିଲ ହୃଦୟ ଯାଚନା ?
କାହାର ହୃଦୟ ଦେଇ କଏ ଜାଣେ କହୁଥିଲ କଥା —
କାହାର ବ୍ୟଥାରେ ଜାଣେ ଫୁଟିଥିଲ କା'ର ଚିର ବ୍ୟଥା ?
ଏଇ ସେ ଧରଣୀ, ବନ୍ଧୁ, ଏଇ ପରି ସେ ଭିକ୍ଷା କାରିଣୀ !
ଦେଖୁ ନ' କିପରି ହୁଏ ଆମ ଲାଗି ନିତ୍ୟ ପାଗଳିନୀ ! !
କେତେ ସେ ଯେ ଭଲପାଏ—ହାଡ ମାଂସ ଆଦି ଭଲ ପାଏ !
ସେ ପ୍ରୀତିର କାହିଁ କ୍ଷୟ ?—ଦେଲୁଁ ବେଳ ଘନ ହୋଇଯାଏ !
ମରଣ ଯେ କାଳେ ଆସି ମଣିଷରେ କରେ ନିମନ୍ତ୍ରଣ,
ବାଉଳା ଅବନୀ, ଅହା, ଲୁହ କେତେ ଢାଳେ ଅକାରଣ !

ରହେ ଯେ ଶବଣ୍ଠା ପଞ୍ଚ ! ତଥାପି ସେ ହୃଦେ ନେଇ ପାରେ—
ସତେ କି ଅଫିମ ନିଶା ପାଗଳୀର ତନୁମନ ଝାଁକେ ।
ଏ ପ୍ରୀତର କାହିଁ ଶେଷ ?—କି ଆକାଙ୍କ୍ଷା ଘୋଟେ ତାର ପ୍ରାଣ
ସେ ପ୍ରୀତର ଫଳ୍କ ରଣ କେ ଲଭବ ତାକ୍ର ଅପମାନ !
କ୍ଷଣେ ହେ କ୍ଷୁଣ୍ଣ ହେ, ବନ୍ଧୁ, ପୃଥିବୀର କରୁଣ ମିନତ ···
ସେ ପ୍ରେମେ ନ ହୋଇ ମଗ୍ନ ରହେ ନାହିଁ ସ୍ଥିର ମୋରମତ ।

—୪୦୪—

## ମଗୁଶିର ମାସର ନିଶାନ୍ତ

ମଗୁଶିର ମାସର ନିଶାନ୍ତ···
ମଧୁମୟୀ, ଶୀତଳ, ସୁନ୍ଦର ।
ଟାଣି ହୋଇ ରହିଛି ଆକାଶ
ପୃଥିବୀର ବକ୍ଷ ଉପରେ ।
ଦିଗଧାରେ ସଳିକାଠି ଫାଟିଛି ସିନ୍ଦୂର···
ସୁନାର ଲହରୀ ତାର ଢେଉ ଖେଳି ଯୋଟେ ଗୃହଦିଗ···
ନାହିଁ ମେଘ, ନାହିଁ ତାର ଛୁଟା···
ହସୁଛି ବଙ୍କିମ ଚନ୍ଦ୍ର···ଫୁଟି ଉଠି ନେଲାନ୍ତି ତାରକା···
ଖ୍ରୀଷ୍ଟପୂର୍ବ ଭାରତବର୍ଷର
କେଉଁ ଏକ ରାଜାଧିରାଜର
ମଣିଖଚ୍ଚା ରେଶମ ଛତା ଓ
ଚନ୍ଦ୍ରଚୂଡ଼-ଭେଲା-ତଳ ଲଭେ
ଆଲେକ୍‌ଜାଣ୍ଡ୍ରର ସ୍ୱପ୍ନ କରେ ରୂପାୟିତ
ସେଇ ତ ସେ ଛତାଟିର ସୁନା ଜରି ଉଠୁଚି ଝଲସି

ଇନ୍ଦ୍ର ସ୍ବରେ କର ପରାଜୟ··· !
ଏଇ ତ’ ଜୟସ୍ତବ ସ୍ପୃହା ଝର ଝର ମୁଗ୍‌ଧ କରେ ପ୍ରାଣ !
ଘୂଷ୍ଟିଉଠେ ସୁନେଲି ସୂର୍ଯ୍ୟ···
ଅମ୍ବରର ସୁବେଶ ଗୋଲକ···
ଏଇ ତ ସେ ରକ୍ତବିମ୍ବ ଫଳ
ଦିନେ ହୋଇ ଯା ଲାଗି ପାଗଳ
ଛୁଟିଥିଲା ହନୁମାନ ଗିରି ବନ ଡେଇଁ !
ନାହିଁ ସେହି ହନୁମାନ···ଅଛି କିନ୍ତୁ ସେ ଶିଶୁ ଚିପାସ···
ଶିଶୁ ଯେବେ ନାଚେ ଉଲ୍ଲାସେ,
ସୁବର୍ଣ୍ଣକାନ୍ତିର ଓଠେ ଖେଳିଯାଏ ମୃଦୁ ସ୍ମିତ ରେଖା ।
ସୂର୍ଯ୍ୟ ଉଠେ ଝଲସେ ଧରଣୀ···
ସୁନା ମିଶେ ଧୀରେ ରୁପା ଦେହେ
ମୃଦୁ ମିଶେ ପ୍ରଖର ଅନ୍ତରେ···
ଆଖିପତା ଧୀରେ ମୁଦ ଆସେ···
ଧରଣୀର ଧାନଶେଷ ଉଠୁଛି ଗନ୍ଧାଟି,
ମଣିଷର କୃତିତ୍ୱରେ ଆଲିଙ୍ଗନ ଦିଏ ସୂର୍ଯ୍ୟ ମୁଗ୍‌ଧେ···
ମଣିଷ ଯା’ ରଚେ ଲକ୍ଷ୍ମ ଲୁହେ
ଗୋପନେ ପ୍ରକୃତ କରେ ଉପଭୋଗ···ଜାଣେ କି ମଣିଷ ?
ଥୁରୁ ଥୁରୁ ଥରେ ଗୃହୀପୁଅ—
( ଦେହଟାରେ ମସିଆ ପାଛୁଡ଼ା,—
ବହୁ ଜାଗା ପଡ଼େ ଯାର ତାଳି )
ଝାବରରେ ଭଙ୍ଗା ହୃଦ ଘାସେ
ନଇଁ ନଇଁ ଦାଅ ଖୋପି ଅଣ୍ଟାରେ ଧାଇଁଛି···
ଜୀବନ କଷଣ ଭୁଲି ସେ ତ’ ଅଙ୍କ ସପନେ ହସିଛି···

ଦଇବର ବଡ଼ ଅନୁଗ୍ରହ···

ଏସନ ପାଳକ ଭଲ···ଧାନ ମୁଠେ ଫଳିଚ ସୁନ୍ଦର···

ଉପରକୁ ଖରା ଟିକେ ଉଠେ···

ବିଲ ପଥେ ଧୂଳି ଧୂଆଁ ଉଡ଼େ···

ଭଡ଼ା ହୋଇ ଚାଲନ୍ତି ବଳଦ,

ଠଙ୍ଗ ଠଙ୍ଗ ଘଣ୍ଟି ବାଜି ଉଠେ···

ପଛେ ପଛେ ଚାଷୀ ପୁଅ ହୋଇ ଅଶ୍ୱହର୍ଷ

ବୋଲୁଥାଏ ବେତାଳିଆ ଛାନ୍ଦ ଅବା ଚଉପଦୀ ପଦେ···

ଧୂଳି ଉଡ଼େ, ଉଡ଼ିଯାଏ ମନ—

ଆକାଶେ, ଘରେ, ବା ବିଲେ—କିଏ ତାର କରିବ ମୀମାଂସା ?

ଆଉ ଟିକେ ଖରା ମାଡ଼ି ଆସେ···

ଚାଆନ୍ତି—ସେ ଆସନ୍ତି ବାହାରେ···

( କଟୀ ତଟେ ଝୁଲେ ପାନବଟା,

ଗାଲେ ଜକା ଏକ ଖିଲ ପାନ,

ବାଆଁ କାଖେ ଛତାବାଡ଼ି ରହନ୍ତି ସଂଯମେ )

ଚାଲିଁ ଚାଲିଁ ମନେ ମନେ ହୁଏ ବଡ଼ ମସ୍ତକ ହିସାବ···

ଖରା ଉଠେ ଉପରେ ଉପରେ,

ମଗୁଣିର ସୁନାଝେଡ଼ ଖେଳିଯାଏ ଅନ୍ତରେ ଅନ୍ତରେ ।

——

## ସୃଷ୍ଟିର ମୁଁ, ସୃଷ୍ଟି ମୋର

ଭିକାରୁଣୀ ଛିଣ୍ଡା ଲୁଗା ସମ

ପଉଷ-ଆକାଶ ଛାଏ ପାଉଁଶିଆ ମେଘଟା ନିର୍ମମ···

ଫାଙ୍କେ ଫାଙ୍କେ ଉଙ୍କି ମାରେ ନୀଳ
ସଞ୍ଚଧଞ୍ଚ ପଦ୍ମବନ ଭେଦ   ଯଥା ନିସ୍ତରଙ୍ଗ ନୀର···
ନୀଳ ଛୁଟେ ସୁନା ଫୁଲ ପରି
ଦପଦପ ଦ୍ରୁତ ତାଳ   ବଜାୟୀର ଗଉରବ ଧରି···
ଜଙ୍ଗଲରେ ଧନୁର୍ଦ୍ଧାରୀ ଯଥା
ଗଳି ଗଳି ହୋଇ ପାର ଖୋଜି ବୁଲେ ଶିକାରର ପଥ
ମୁହିଁ ଗଲି ଭେଦ ସେହିପରି
ତାରକାର ବହୁଦୂରେ ଯହିଁ ନାହିଁ ଦିବସ ଶର୍ବରୀ,
ନାହିଁ ଯହିଁ ସୃଷ୍ଟି ଏ ବିଜ୍ଞାନ,
ନାହିଁ ଯହିଁ ସଂଚଳନ, ସୁଖ, ଦୁଃଖ, ଅଜ୍ଞାନତା, ଜ୍ଞାନ
ଘୂରିଗଲି ସୃଷ୍ଟି ଗହ୍ୱରକଡ଼···
କାହିଁ ସେହି ଦିବ୍ୟ ଆତ୍ମା !··· ଖୋଜି ଖୋଜି ହେଲି ଶେଷେ ଜଡ଼···
ବିରହୀର ନବମ ଦଶାରେ
ହେଲି ପରା ପାଦ ତେବେ ! ଭାଗ୍ୟେ ମୁହିଁ ରହିଲି ପ୍ରାଣରେ !
ହୃଦେଁ ଏଇ ନୀରବ ଲଗନେ
ଯାହାର ପଶ୍ଚାତେ ଧାଇଁ ନିରତ ଏ ଜୀବନ ପ୍ରାଙ୍ଗଣେ,
ତାରକାର ଉଜ୍ଜ୍ୱଳ କିରଣେ,
ମେଘ ମନ୍ଦ୍ର ସ୍ୱରେ,   ବୃଷ୍ଟି ଦେବୀ ରୂପର ପ୍ଲାବନେ,
ନିତ୍ୟ ନବ ଉଚ୍ଛଳ ଉଚ୍ଛ୍ୱାସେ
ହସି ହସି ଡାକେ ମୋତେ ନିରତ ଯେ ବ୍ୟଥାର ଉଶ୍ୱାସେ
କାହିଁ ସେ ଏ ସୃଷ୍ଟି ଅନ୍ତରାଳେ ?
ରୂପର ଗୋପନ ସେତ' ଦିବ୍ୟ ରୂପ ତାର ନାହିଁ ତାଳେ ।
ହସି ଉଠୁ ତାରକା, ଆକାଶ,
ହସି ଉଠୁ କୁମୁଦିନୀ, ଅତୀନ୍ଦ୍ରୀୟ ରୂପର ବିକାଶ

ଫେଡ଼ଇ ମୋର ଏଇ ଅନ୍ତରରେ,
ଉନମତ୍ତ ହୁଏ ମୁହିଁ ସେ ଭାବର ସୁଧା ବା ଗରଳେ ।
ଶେଷରୁ ଏକା ସେ ମୋ ଜୀବନର,
ସୃଜିବ ମୁଁ ସୃଷ୍ଟି ମୋର···ଧନ୍ୟ ମୁହିଁ···ସତେ କି ସୁନ୍ଦର !

## ପ୍ରୀତି

ପ୍ରେମେ ଯଦି ରସାଣିତ କରମ ମୋ ସକଳ
କରମରେ ଫୁଟିବେ ଦେଖା ସତ୍ୟ ଶିବ ସୁନ୍ଦର,
ସରଗର କୁହୁଡ଼ିରେ ଭଗବାନ ହସନ୍ତି—
ସରଗ ତ' ରହେ ତହିଁ ଯହିଁ ଥାଏ ପୀରତି ।

—:o:—

## ଉପବନେ ମୋର

ଉପବନେ ମୋର ଫୁଟିବ ଗୋଲାପ
ଜୁଇ ଯାଇ ମଲ୍ଲୀ ମାଧବୀ ହେନା,
ଛଅ ଋତୁ ଭରି କୁସୁମ କୁସୁମ
ମନ ପ୍ରାଣ ମୋର ହରିବେ କିଣା;
ଛୋଟ ମୋ କୁଟୀର ଅଗଣାଟି ସାରା
ଛୁଟିବ ଫୁଲର ମହକ ଧାରା,
ଛୁଟିବେ ଭଅଁର ମହୁମାଛି କେତେ
ତୁଟାଇ ଦୁନିଆ ଜଂଜାଳ ଭାର;
ଫୁଲ ନୁହେଁ ଖାଲି ସବୁଜ ସବୁଜା
ନେଉଛିଅ ନାଉ କଖାରୁ ଝଙ୍କି

ଭେଣ୍ଡି ବାଇ ଗଣ ଗୁଅଁ ସ୍ତ କଲସ୍ତ
କଦଳୀ ପପେସ୍ତା କସମ ଲେଖେ
ଏଇ ହାତେ ମୋର ଉଠିବେ ଚହଟି,
ଫୁଟିବ ଫୁଲରେ ଧନ୍ଦବ କଷି,
ଉଚ୍ଛୁଳିବ ମନ ଉଚ୍ଛୁଳିବ ପ୍ରାଣ
ପାଚିବ ସମସ୍ତ ଳାଉଡ ହସି;
ମୁଁ ଦେବ ମୋ ପ୍ରାଣ, ମୋର ଲହୁ ଲୁହ
ସେମାନେ ଦେବେ ବି’ ନିଜର ପ୍ରାଣ,
ଫୁଲଟିଏ ଅବା ଫଳଟାଏ ନେଲେ
ନ ମଣିବେ ମନେ ସେ ଅପମାନ;
ଉପବନେ ମୋର ପ୍ରେମର ଜୁଆର
ଛୁଟିବ ଛଇଳୀ ଝରଣା ପର,
ଯେତେଦୂର ତା’ର ଶୁଭିବ ଶବଦ
ସେ ଥାନ ହୋଇବ ଅମର ପୁରୀ;
ଫୁଲେ ଫଳେ ପୁଣି ପତ୍ରରେ ପତ୍ରରେ
ସୁଷମା ଝଟଉର ରଜତ ଶିରେ
ହୃଦୟେ ହୃଦୟେ ଅଲେଖ ରୂପଟି
ଫୁଟିବେ ବଇଁଶୀ ବଜାଇ ଧୀରେ;
ସାଜରେ ସାଜରେ ଉପବନ ମୋର
ଫୁଟ ବଖବାର,ଗୋଲାପ ଫୁଟ
ଫୁଟାଅ ମୋ ପ୍ରାଣ, ଧରଣୀ ଗୁଡରେ
ଦବା କାଣି ସଦା ପୁଲକେ ଲୋଟ;

ଯେ ଧରା ଆମକୁ ଭଲପାଏ ଏତେ
ସଜାଅ ସଜାଅ ତାହାର ଘର,
ତାହାର ସୁଖରେ ଆମର ସରଗ
ଜାଲ ସେ ଅମର ଜୀବନେ ବାତୀ ।
ପ୍ରେମ, ଅହା ସତେ କେତେ ସୁନ୍ଦର ସେ,
ସେହୁ ତ' ଜୀବନ, ସେହୁ ତ' ପ୍ରାଣ,
ସତ୍ୟ ଶିବ ସେହୁ,ସୁନ୍ଦର ସେହୁରେ,
ଜନମ, ମରଣ, ସେ ଭଗବାନ ।

—×ଃ୦ଃ×—

## ଦେଖ ବନ୍ଧୁ

ଦେଖ ବନ୍ଧୁ, ପ୍ରାଚୀ ଦିଗ ମୂଳେ
'ଉଦୟ'ର ଚୂଳେ,
ମଣିଷ ସମାନ
ସୂର୍ଯ୍ୟ ଉଠେ, ଲଭି ଅବସାନ ।
ଅକାଶରେ ଗୃହ୍ଯ ସିତ ରେଖା
ପଦ୍ମ ରାଗ ମଖା,
ସଞ୍ଚାର କମ୍ପନ,
ରନ୍ଧ୍ରେ, ରନ୍ଧ୍ରେ, ପ୍ରାଣ ସଂଚରଣ ।
ନଭ ନଭ ଯାଏ ରକ୍ତରାଗ
ଅଞ୍ଜନ ସରାଗ,
ଉଜ୍ଜ୍ୱଳ କିରଣ
ମନ ଲୁଏ, ଲୋଡ଼େ କଳପନା ।

-ଫୁଟି ଉଠେ ତୃପ୍ତ ଜୀବନର...
ବ୍ରହ୍ମାଣ୍ଡ ପ୍ରାଣର
ସ୍ଫୂର୍ତ୍ତି ପ୍ରକଟିତ,
ଏକ ହୁଏ ଆନନ୍ଦରେ ସ୍ପନ୍ଦିତ ।

ପୁଣି ବନ୍ଧୁ ଆସିବ ରଜନୀ
ସମସ୍ତ ଅବନୀ
ଯାଚି ମଧୁରିମା
ଭୋଗି ଭୋଗି ଲଭିବ ଗରିମା ।

ଦିବା ଦୀପ୍ତି ନ ରହିବ ଚିର
ପଶ୍ଚିମ ପ୍ରାଚୀର
ଦେବ ନିମନ୍ତ୍ରଣ
ଯେବେ କରି ଗୂଢ଼ ଆବେଦନ ।

ଫୁଟିବ ହେ ପୁଣି ରକ୍ତ ଆଭା—
ପ୍ରଦୋଷର ସଭା
ରଙ୍ଗ ଉଷା ପରି
ହେବ ଦୃପ୍ତ ନବ ଆଶା ଧରି ।

ସୂର୍ଯ୍ୟ ଯିବ ଲଭି ହସି ହସି
'ସୌର' ଖୋଲେ ମିଶି;
ଅବନୀ ଚଳିବ
ଉଦୟାସ୍ତ ସତତ ଭୋଗିବ ।

—o—

## ପଉଷ ସଂଜ

"ବେଗି ବେଗି ଭାଇ ଅଡ଼ାରେ ବଳଦ ବେଳ ଆଉ ଛଳେ ନାହିଁ ,
ସୂର୍ଯ୍ୟ ଡୁବିଲେଣି ପାହାଡ଼ ଉହାଡ଼େ ମଠ କାହିଁ କରୁ ଭାଇ ?
ସଂଜ ମେଳା ସାରି ପକ୍ଷୀଏ ଗଲେଣି ନିଜର ବସାକୁ ଉଡ଼ି,
ଅଂଧାର ଦେଉଣି ବସୁଧା ଦେହରେ ସକାଳ କୁହୁଡ଼ି ପରି ।"
"ହକର ହକର ହେଉଥିଲୁ କାହିଁ ଆସିବାକୁ ବେଳ ବୁଡ଼େ ?
ଛୋଟା ପଡ଼ିଆଁ ଦେଖାଇଲୁ ତେବେ ହଁସା କାହିଁ ଏବେ ଉଡ଼େ ?
ଛୋଟି ପାଇଁ ଯଦି ପାଗଳ ଏତେ ତୁ ଅଇଲୁ କାହିଁରେ ଛାଡ଼ି ?
ଧର୍ଯ୍ୟ ଧର୍‌ରେ, କେହୁ ନାହିଁ ଚୋର ନେବ ଯେ ତୋ ଧନ କାଢ଼ି ।"
"କାହିଁ କହୁ ଭାଇ···ଅଛ ସେ ଭଗ୍ନାଳୁ···ଛାଇ ଦେଖି ମାତେ ଡ଼ର,
ଏଣୁ ତା' ନିଅମ ସଂଜ ନ ହେଉଣୁ ଯିବ ନିଶ୍ଚେ ମୁହିଁ ଘର,
ଛଳେ ଡେରି ହେଲେ ରୁଷିବ ମୋ ଧନୀ, ନ କହିବ ମୋତେ କଥା,
ବୁଝାଇ କହିଲେ ନ ମାନିବ ସଦା ତଳକୁ ହାଣିବ ମଥା ।"
"ସେ ନୁହେଁ ଡରରେ, ସେ ଯେ ତା ଶାସନ···ମାଇପି ଜାତିର ଫଣ୍ଡା
ନୂଆ ବାହାଘର ହୋଇଛୁ ତୋହର, ମରମ ବୁଝିନୁ ହୁଣ୍ଡା;
ମାଇକିନା ମାନେ ଜାଣନ୍ତି ନାହିଁକି ମରଦେ ଭଅଁର ଜାତି,
ଗୋଟିଏ ଫୁଲରୁ ମହୁ ଶୋଷି ଆନ ଫୁଲରେ ପାତିବେ ଛାତି !"
"ଫଣ୍ଡା ହେଉ ଅବା ଢୋରଡ଼ା ହେଉ ସେ ଧନୀର ନୟନ ପାଣି
ନ ସହି ପାରେ ମୁଁ, ନ ସହେ ଶ' ତାର ଜଡ଼ିଲ ଗଳାର ବାଣୀ;
ହସର ତରଙ୍ଗ ଖେଳୁଥିଲେ ସଦା ଧନୀର ଓଠରେ ମୋର,
ଦୁନିଆ କଂକାଳ ତାପ ପାପ ସବୁ ଚୋରି କରନିଏ ଚୋର ।"
"ତୋହର ପରିରେ ଦିନ ଥିଲା ମୋର, ଥିଲା ଏଇ ଉଦବେଗ;
ଚାଲି ଯିବାର ଯେ ଚାଲି ଯାଇଅଛି; କିଏ ଆଉ ତାହା ଦେବ ?

ଖେଳୁଥିଲା ତେବେ ରକତେ ବିଜୁଳି, ସୁନାଗଛ ଫୁଲ ମଣ୍ଡନେ,
ମୃଗ ପରି ହେଉଥିଲି ମୁଁ ଚଂଚଳ ସୁକୁମାରସ୍ୱପ୍ନ ବନେ ।
ନିଠୁର ଦଇବ, ନିଠୁର କାଳି ଏ, ଅହା, ନେଲା କାହିଁ ଟାଣି !
ଜୀବନଟା ଖାଲି ଯା' ଦୁଇ ଦିନ ଥାଅନ୍ତି ଯଦି ମୁଁ ଜାଣି,
ଅଗରୁ ଥାଆନ୍ତି ସାବଧାନ ହୋଇ; ମଣିଷର କାହିଁ ଜ୍ଞାନ ?
ପର ଗୋଲାମୀରେ ରହୁ ନିତି ପ୍ରତି ଭାବେ ନିଜେ ବଳୀୟାନ !"
"ନ କହ ଏ କଥା ! ଧନୀ ମୋର ଶିର, ଧନୀ ମୋ ହଜିବ ନାହିଁ
ସବୁଦିନ ସେତ' ରହିବ ଭାଇରେ ରହିବ ମୋ ମୂଳେ ଗୁହିଁ —
ଆଜିକାର ହସ, ଆଜିକାର ଖେଳ, ଆଜିକାର ଅଭିମାନ,
ଅଛି ତା ହୃଦୟ ପ୍ରୀତିର ଜୋଛନା ହୋଇବନି ଅବସାନ ;
ମରଣଟା ଖାଲି ଦେହର ଭାଇରେ ମରଣ ଦେହର ଖାଲି,
ହାଡ ମାଂସ ଯିବ ନ ଯିବ ଗୋପନ ଛାତିର ଗଭୀର ଗୁଳି ।
ଧନୀ ଲାଗି ଦେବି ଅବଶ ଜୀବନେ ନୟନର ବାରିଧାର;
ସେଇ ମୋ ମୁକତି, ସେଇ ମୋର ଶାନ୍ତି, ତୁଟାଇବ ସେ ମୋ ଜ୍ୱାଳା
ତୋ ପରି ଦଇବେ କାଳକୁ ନିନ୍ଦି ମୁଁ ହେବ ନାହିଁ ହତ ପ୍ରାଣ,
ସୁନା ଗଛେ ମୋର ଫୁଟିବ ଫୁଲରେ ସଉରଭ କରି ଦାନ ।
କି କଥା ଭାବିଲୁ ! ନେହୁରି ଭାଇରେ କହନା ଆଉ ତୋ କଥା,
ଏ ଖରାପ କଥା ଭାବିଲେ ଧନୀ ତା' ପାଇବ ବିଷମ ବ୍ୟଥା ।
ଅଜ୍ଞାନ ହୁଏଁ ମୁଁ, ପାଗଳ ହୁଏ ମୁଁ ସେଇ ମୋର ଭାରି ଭଲ,
ପାଣି ପାଇ ଯଦି ନ ପିଇବୁ ପାଣି ପାଇବୁ ତୁ କେଉଁ ଫଳ?
ମରୁଡି ଦିନରେ ମରୁଡ଼ି କଥାରେ ପାଳନ୍ତି ପାଳିକ କଥା,
କି ଯଶ ମିଳିବ ଅଦିନ କଥାରେ ଘୂରାଇଲେ ନିଜ ମଥା ?"
"ଛକନା ମନର ଠୋକା ତୁ ଭାଇରେ ବୁଝିବୁ ଜୀବନ କାହୁଁ ?
ତଥାପି କି ଲାଗି ହେବି ମୁହିଁ ତୋର ଗୁହାରୀ ଟହଳ ସାହୁ ?"

ଇହ ଇହ କହୁ ବଳଦ ଗୋଡ଼ାଇ ଗୃହଲେ ମାରବେ ବେକ,
ଯେଉଁ କଥା ଭବ ସେତେ ଗୃହଗଲେ ଯେଉଁର ଦୁନିଆ ସେକ

— x —

## ସାତଘଡ଼ି

ସାତଘଡ଼ ପର ବର ଜହ୍ନ ହସି ଉଠେ
ହସି ଉଠେ ପଡ଼ଘର ଧୂମାଳ ଧରଣୀ
ହସି ଉଠେ ଧାନଗଭ୍ର ଗଳାରେ ଗଳାରେ
ଶୀତର ଭଷଣ ଯାଏ ଘୁଞ୍ଚ ଏ ଅବନୀ ।
ଦନମାନ ଲଗି ଲଗି ବତା ସରଂଜାମ
ପୁରନାଗ୍ନି କରଛନ୍ତି ଯତନେ ଭଅର
ଏବେ ଉଭ ହୋଇଛନ୍ତି ବୃନ୍ଦାବତୀ ପୀଠେ—
ଅଂଗେ ଅଂଗେ ଜୀବନର ନବୀନ ସଞ୍ଚାର ।
ଜଣେ କେ କାଟିଛି ସେଇ୍ ବୃନ୍ଦାବତୀ ପାଦେ
ପୀଠଉର ପଦ୍ମଫୁଲ କମଡମ ଘର;
ତହିଁ ପରେ ଥୁଅ ଥାଳୀ ନଇବେଦ୍ୟ ଲଗି,
ପାଖେ ଟୁଅ ଦୀପ ଏକ—ଜଳେ ସେ ଉଜଳ ।
ଚକୁଳି, ବଜର ମଣ୍ଡା, ଛେନା ମଣ୍ଡା, ଛେନା,
ଦାଣ୍ଡ ଝୁଲ, ବାଠେ କୋଲି, କଦଳୀ, ନଡ଼ିଅ;
ଛୁଞ୍ଚିପତ, ପାଲଲଡୁ, ମାଲପୁଆ, ଗଜା,
କୁଣ୍ଡା ପିଠା ଅଧ ଶଜ ରସ ରସାଳିଅ
ରସ ହାନ ଅବା, କିଂବା ସୁମିଷ୍ଟ ମଧୁର,
ହୋଇଚ ସଜଡ଼ା ସେଇ ଥାଳୀର ଉପରେ;

ଗୃହ ଘର ଝିଅ ବହୂ ସଧବା ରମଣୀ
ହାତେ ଧରି ଶଙ୍ଖ ଭରି ଅତି ଆନନ୍ଦରେ;
ନାଚୁଛନ୍ତି ପିଲାମାନେ ପାଶେ ଆବେଗରେ
ଅପେକ୍ଷା କରନ୍ତି କେବେ ଭୋଗ ଯିବ ସରି,
ଖାଇବେ ମଉଜ ମନେ ସାତଘଣ୍ଟି ପିଠା
ପେଟ, ତଣ୍ଟି, ହୃଦ, ମନ, ପ୍ରାଣ, ଧ୍ୟାନ ଭରି।
କେଉଁ ପୁଅ ମାଅ କାନେ "ଦେଏଲେ ଦେଏଲେ"
କହି କାନ୍ଦ ଅଝଟରେ ମାଆ କେଶ ଟାଣେ,
'ରହ ଦୁଷ୍ଟ' କହି ମାଆ ପୁଣି ସ୍ୱରଗରେ
'ଖାଇବୁ ଖାଇବୁ' କହି ଓଠେ ହସ ଆଣେ;
ଶିଶୁର ଗାଲଟି ଚିପି କହେ "ରେ ତୋ ମାଆ
ଲଗାଇ ଦଅନ୍ତୁ ଭୋଗ, ଖାଇବୁ ତୁ ବଳେ।"
'ଉଁଉଁ, ଉଁଉଁ' ଶିଶୁ କହେ, ମାଆ କହେ "ନା, ନା,
ସୁନା ପରି, କାନ୍ଦନ୍ତି, ନା ଭୋଗରାଗ କାଳେ।"
ଶୁକ୍ଳବସ୍ତ୍ରା, ଶୁଚି ମନା, ଗୃହିଣୀ ରମଣୀ
ପାଠ ବଉ ଘରେ ଆସି ଗଡ଼ୁ ଧରି ହାତେ
କହନ୍ତି "କି ଆସିଗଲା ସବୁ ଘର ଥାଳୀ ?
ଫୁଲ ଦଅ, ସାରି ଦଏଁ ବଡ ହେଲା ଏତେ।"
ଜଣେ କହେ, "ରମାବୋଉ ଏତେବେଳ ସରି
ବାହାରନ୍ତି ଘରୁ ତାର ବଡ ଅଳସେଇ,"
"ଭଲ ଦିନ ଭଲ ବାର ନାହିଁ ତାର କିଛି"
ଆନ କହେ ପେଡ଼ି ପରି ମୁହଁଟା ଫୁଲେଇ।
ଏ ସମୟେ ଉଷା ଆସି କହିଲା "ଲୋ, ଖୁଡ଼ି
ଆସିବନି, ମନାକଲା, ଶୋଇଛି, କାନ୍ଦୁଚି,

ଯେତେ ମୁଁ କହିଲି ଯେ ତ' ନ ଶୁଣିଲ କିଛି,
ରମା, ରମା, ଖେଳ ସଦା ହୁଏ ବାଉଳୁର ।
'ସ୍ୱାଇଟର ଦଇବ' କହି, ଦୀର୍ଘଶ୍ୱାସ ଛାଡ଼ି
ପାଠ ବନ୍ଦ ନଇବେଦ୍ୟ କାମ ଆରମ୍ଭିଲେ,
ଶଙ୍ଖ ହୁଳହୁଳି ଦେଇ ପୁରନାରୀ ଥିଏ
ନୀରବ ସେ ସଂଧ୍ୟାଟିକୁ ଉଚ୍ଛୁଳାଇ ଦେଲେ ।
ସାଙ୍ଗେ ସାଙ୍ଗେ ଗାଁ ଯାକ ପଡିଲା ଉଚ୍ଛୁଳି
ଉଚ୍ଛୁଳିଲା ଘର ଘର ବାହାର ଭିତର,
ଶରତର ଶୀତକ୍ଳେଶ ନ ମାନି ଆକାଶେ
ଦଶମୀର ଚନ୍ଦ୍ର ହସି ଦିଶିଲା ଉଜ୍ଜ୍ୱଳ ।

—×୫୦୫×—

## ବଉଳ ଅମିଷିଆ ଗୀତ

( ରସକୋଇଲି ବାଣୀ )

ଆସ ଗୋ ସୁନ୍ଦରୀ ଆସ ଗୋ ରାଣୀ
ଛନ୍ଦରେ ଖେଳାଇ ନବୀନ ଠାଣି,
ଝାମ ଧନ୍ଦା ଆଜି ପଛକୁ ରହୁ,
ଝରୁଅଛି ଦେଖ ଉତଳା ମହୁ ସେ,
କୁସୁମିତ ଚୂଡରାଣୀ ଯେ,
ବାଜିଲଣି ଶୁଣ କୁସୁମଶରର ଶୁଭ ଶଙ୍ଖ ଆଗମନୀ ଯେ ।୧।
ହେମନ୍ତ ରାଜାର ଫାଟକ ଡେଇ
ଛପି ଛପି ଦେଖ ଦକ୍ଷିଣା ନେଇ
ଚନ୍ଦନ ବନର ସୁବାସ ସାର

କଣୋର୍ଗ ତନ୍‌ରେ ପରଶ ପା'ନ୍ତ ସେ
ଝାଣିଦଏ ଅତ ଧୀରେ ସେ,
ଫୁଲଙ୍କ ଉଠୁଛି କଣୋର୍ଗ ଗାଧୋଇ ପୁଲକ ନଦୀର ନୀର ସେ, ।୬।
ପ୍ରେମର; ସ୍ୱନ୍ଦର,ଏସ୍ୱନ ସ୍ୱତ
କୁଳମାନ ଅବା କମାଣ ଭୀତ,
ମାନବାକୁ ମନା ସତତ କରେ,
ଝଡ ତୋଫାନରେ ପ୍ରଦୀପ ଧରେ ସେ
ଦର୍ଶିଣା ତ' ଅମଣିଷ ସେ
ସ୍ୱର୍ଗୀତ ଉମ୍ଭ ବା କରଥାନ୍ତା ଯେବେ ହୋଇ ଥାନ୍ତା ସେ ମଣିଷ ସେ ।୭।
ଯଉବନ ଆଜି ଗାଉଛି ଗୀତ
ହର ନେଉଅଛି ମୋ ମନ ଚିତ୍ତ,
ଉଡିବାକୁ ଅତ ଉଛନ ମନ
ଶୁଣିବାକୁ ଘନ ଗୁଞ୍ଜକ ସ୍ୱନ ସେ
ମନଟା ଅଧୀର ଅଛ ସେ,
ମନ ହୁଏ ନୀଳ ଆକାଶରେ ନୀଳ ହୋଇ ମୁଁ ରଚନ୍ତ ରତ ସେ ।୮।
- ଅସ ଗୋ ସୁନ୍ଦର ଦନକ ଲାଗି
ସଂସାର ଖେଳାରେ ନ ହେବା ଭାଗୀ,
ଉଡ଼ ଉଡ଼ି ଯିବା, ଯୌବନ ସରେ,
କେଳି କର ତୁଣି ଫେରବା ଘରେ ସେ
କାଲି ପ୍ରାତେ ସାଥି ହୋଇ ସେ
ଜୀବନରେ ଯେତେ ଜଡ଼ତା ରହିଛି ଅସିବା ସେଠାରେ ଧୋଇ ସେ ।୯।
କାଲକୁ ଧରଣୀ ଦଶିବ ନୂଆ
ବୁଆହେବ ତହିଁ ଚନ୍ଦନ ଚୂଆ,

ବକ୍ଷିବାଲ୍ଲ ହେବ' ଧାହାଁସ ଭାବ,
ନ ଲଗିବ ଆଉ ଦୁନିଆ ଭାଷା ସେ
ଯଉବନେ ଯଜ୍‌ବନେ ଯେ
ଭାସିବା, ବୁଝିବା, ହସିବା, ରସିବା, ନଥିବ କାଳିମା ମନେ ଯେ ।୬।
ଅଂସ ସାଥି ବେଗେ ଅସ ଗୋ ଚଳି
ଛାତିରେ ମୋହର ପଡ ଗୋ ଢଳି,
ବାହୁ ବଂଧନରେ ନୀରବେ ଶୁଅ
କଥା ଟୀ'ଲ ଛାତି କଂପନେ କୁହ ସେ,
ଚୂଡ଼ ସପନରେ ମାତ ଗୋ।
ଜୀବନେ ବସନ୍ତ ସୁଷମା ଖଣିର ହେବ ମଧୁ ରେଖାପାତ ଗୋ ।୭।

—୦—

## —ଜୀବନ—

କର ବଂଧୁ, କର ଅନୁଭବ—
ଶିଳ୍ପୀର ସପନ—ସେ ଯେ ଜୀବନର ବସ୍ତ ବାସ୍ତବ !

—୦—

# କଥା କୁହ

ପୃଥିବୀର ରଙ୍ଗ ତୋଳି ପଶ୍ଚିମରେ ସୂର୍ଯ୍ୟ ଯାଏ ଢଳି,
ପୃଥିବୀର ଦୀପ ଯାଏ ଲିଭି……
କିରଣ-ଆକୁଳ ପକ୍ଷୀ କିରଣର ଘନ ଆସ୍ତରଣେ
ଖୁସି ବୁଲେ ଛନ୍ଦଭରା ମନେ…
ପ୍ରହରେ ମାତେ ଅନ୍ଧକାର—
ପୂର୍ଣ୍ଣିମା ଫୁଟେଇ ଜହ୍ନ ହାସେ କି ବା ସନ୍ଧ୍ୟା ପ୍ରାନ୍ତର !

ଅଜ୍ଞାତକୁଳ କେ ତୁମେ ଅସ୍ତ ହୃଦେ ଅନ୍ଧକାର ସାଥେ ?
ଲୁଚି ରହିଛ ରହସ୍ୟେ ଅଜ୍ଞାତେ ?
ନାହିଁ ମୂର୍ତ୍ତି ନାହିଁ ଛାୟା ଅଛି ଖାଲି ଅନ୍ତର ପରଶ ;
କର କିମ୍ବା ହୃଦୟ ଅବଶ ?
ମଣିଷର ଆତ୍ମା ତୁମେ ? ଅବା ତୁମେ ସରଗ ଦେବତା ?
ନାହିଁ ଯାର ରୂପ, ନାହିଁ ସତ୍ତା ?
ଜୀବନର ମୃତ୍ୟୁ ତୁମେ?--ମୃତ୍ୟୁ ପାଇଁ କାହିଁକି ବ୍ୟସ୍ତତା ?
କି ଲାଗି ଏ ଚିର ଆକୁଳତା ?

କଥା କୁହ, କଥା କୁହ,
ଚିତ୍ତର ଏ ଆକୁଳତା ହେଲାଣି ଯେ ଅତି ଦୁର୍ବିସହ ।
ଜୀବନ ଯୁଗର ଲୋକ , ରୁଦ୍ଧଦ୍ୱାରେ କାହିଁ ଅଭିଳାଷୀ !
ମରିଯାଏ ଅପେକ୍ଷାରେ ଶ୍ରାନ୍ତ !

କଥା କୁହ, କଥା କୁହ,
ମରଣେ ଜୀବନ ଲାଗି ପ୍ରାଣ ଖୋଲି ଥରେ କଥା କୁହ !

—୦—

# ଉପଭୋଗ

ଫୁଲ ସଜା ଉପବନ ପରି
ଉପରେ ଆକାଶ ହସେ...
ତଳେ ଏଇ ଧରଣୀର ବକ୍ଷେ
ଜ୍ୟୋତି ତାର ଘନ ହୋଇ ମିଶେ ।
ସେ କି ନୁହେଁ ଆକାଶ ବେଦନା
ସେ କି ନୁହେଁ ଆକୁଳତା ତାର ?
ନୋହିଲେ ଏ ପୃଥିବୀର ସଙ୍ଗେ
ଏ କି ତାର ଗୋପନ ବେଭାର !

ପୃଥିବୀର ଚର୍ଚ୍ଚିତ ଉରସେ
ମଣିଷ କି ନୁହେଁ ଏକ ଫୁଲ ?
ନୀଳ ଏହି ଆକାଶର ପାଶେ
ନାହିଁ ତାର ସଉରଭ ମୂଲ ?
ହୃଦୟର ବ୍ୟଥା, ଆକୁଳତା
ସେ କି ନୁହେଁ ଫୁଲର ସୁବାସ ?
ସେ କି ଯାଇ ନକ୍ଷତ୍ରର ପ୍ରାଣେ
ଧରେ ନାହିଁ ଆନନ୍ଦ ଉଚ୍ଛ୍ୱାସ ?

ସୁନ୍ଦରର ଉପଭୋଗ ନୁହେଁ
ମଣିଷର କର୍ତ୍ତବ୍ୟ କେବଳ;
ନିଜେ ସେ ସୁନ୍ଦର ହେବ
ଏ ସୃଷ୍ଟିରେ କରିବ ସୁନ୍ଦର ।

# ଅରଣ୍ୟ ଗଛ

ଗୋଟି ପକା ରାସ୍ତା ଯାହା ଉଦରକୁଁ ଗୃହବାଲି ଧାଏଁ
ତୋଳା ହେଲା ଯେବେ ତାହା ଭାଗ୍ୟ ହାତେ ମଣିଷ ପରାଏ
ମଣିଷର ହାତେ ,
ପ୍ରକୃତିର ଧ୍ୱଂସ ହାତେ ସେହି କାଲି ପଡ଼ିଲା କରତେ ।

ଅସିଲା ତାହାର ସାଥେ ପଲ୍ଲୀପୁରେ ଏ ନୂତନ ଯୁଗ
ଧାଇଁଲା ମଟର ଗାଡ଼ି, ଲିଭିଗଲା ମୂର୍ଖ କ୍ଲାନ୍ତ ଦାଗ
ପଲ୍ଲୀପୁରେ ସେହି ଦିନୁଁ
ଅଳ୍ପ କେତେ କଲେ ହାହାକାର,
ତାଙ୍କର ଗୃହକୁ ଚିରି ରାସ୍ତା ଧାଏଁ ଅନନ୍ତେ ଅପାର ।

ଆଜି ସେହି ରାସ୍ତା ଧାରେ
ଧୂଳି ଉଡ଼େ ଦିନରାତି, ଚାଲେ ଲୋକ ଲଗାପଟା ସାରେ ।

ଦୁଇଗଛ କଅଁଳିଆ ଦେଖିଲି ମୁଁ ସେହି ପଥ ଧାରେ
ଆଶ୍ଚର୍ଯ୍ୟ ହେଲି ମୁଁ ଦେଖି ସେ ଗଛଟି ସେ ରୁକ୍ଷ ସଂସାରେ ।
ନୁହେଁ ମଲ୍ଲି, ନୁହେଁ ହେନା, ନୁହେଁ କୁନ୍ଦ, ହଳଦୀ ଚମ୍ପକ,
ଉପବନ ଜନ୍ମ ନାହିଁ, ବୃନ୍ତେ ନାହିଁ କେହି ତାର ଠେକ—
ଆବରଣ ଧୂଳି ଭରା, ରସ ମରା ରୁକ୍ଷ ମାଟି ତଳେ,
ସ୍ନେହଭରା ଆଖି କାର ପାଶେ ତାର କେବେ ନାହିଁ ଚଳେ
ତଥାପି ସେ ବଢ଼ି ରହେ, ତଥାପି ସେ ଦିଶେ ଚମତ୍କାର
ବାଇଗଣି ଫୁଲମାନ, ମଖମଲ, ପରି ପତ୍ର ତା'ର ।
ସୃଷ୍ଟିରେ ସେ ବନ୍ଧୁ ପର, ତଥାପି ସେ ଅମୂଲ୍ୟ, ସୁନ୍ଦର,
ସୁନ୍ଦର ସ୍ରଷ୍ଟାର ହାତେ, ଏ ସୃଷ୍ଟିରେ କରୁଛି ସୁନ୍ଦର ।

ଅଜ ସେ ସ୍ମୃତି କଙ୍କାଳ—ରୂପ ଲଭେ ମଣିଷ ସଂସାର,
କେତେ ବଡ଼ ଅହା ନିମ୍ନ ! ସବୁଠାରେ ସ୍ମୃତି ଲକ୍ଷ ଥାଉ !
ସେଇଠ ନ ଛୁଏଁ କେନ୍ଦ୍ର, ଜନ୍ତୁ, ସେଇଠ ଖାଲି ମଣିଷ ଚେତନାରେ;
ସ୍ମୃତିର ଜୀବନ୍ତ ବେଦନା ନ ଜନମେ କାଏ ଏ ସଂସାରେ !

—o—

## ଆମ୍ବଗଛ

ମନେ ପଡେ ଢନକର କଥା—
ସେଇଠ ମୋର ଛୁଇ ବସି ଚାରୁଥିଲ ବାର୍ଡବୋର୍ଡ ପଥା···
ଗେରୁଆ ସେ ପଥାର ଭିତର
କ ଗୁଳ୍ମଖିଗଚା, ଅହା, କେତେ ତହିଁ ସରୁ ସରୁ ସ୍ତର ।
ଚିର ଯାଏ ଅଜ ସେହିପରି
ଗେରୁଆ ଏ ମାଟି ସ୍ତୃତ,ଦେଖିବାର ଇଚ୍ଛା ମନେ ଉଦ୍ଭ ।
ବାଲିଆ ଚିକ୍କଣ ଅଧ ଲକ୍ଷ ଲକ୍ଷ ମାଟିର ପତର ,
ବହ୍ନେ ରଙ୍ଗ ଗ୍ୟାସ ତହୁଁ, ତହିଁ ପୁଣି ସୁନା ରୁପା ଥର,
ସମସ୍ତିଙ୍କ ସ୍ନେହ ଶ୍ରଦ୍ଧା ଯେମ
ଉପରେ ଏ ପ୍ରିୟ ମାଟି, ତା' ଉପରେ ଅମ୍ବଗଛ ଶ୍ରେଣୀ···
ଅମ୍ବଗଛ ପତରେ ପତରେ
ଦେଖେ ମୁଁ ପୃଥିବୀ ସ୍ନେହ, ଜଡ଼ିତ ଯେ କୋଟି କୋଟି ସ୍ତରେ ।
ସେହିପରି ମୋର ଅବାନ୍ତି······
ପାଦତଳେ ମୋର କେତେ ଜୀବନ ଓ ମରଣର ସ୍ରୋତ !
ଲକ୍ଷ ଲକ୍ଷ ହାଡ଼ ମାଂସ , ଲକ୍ଷ ଲକ୍ଷ ପ୍ରୀତିର ନିଶ୍ୱାସ,
ଶିଳ୍ପୀର ହୃଦୟ କେତେ , କେତେ ପୁଣି ଅଖଣ୍ଡ ବିଶ୍ୱାସ

ଲଢ଼ିବାକୁ ଏ ସଂସାର ସୁନା;
ହୃଦୟର ତରଳତା, ମୁଗ ଚନ୍ଦ୍ରା ତାହାର ନମୁନା ।
ଧନେ ମୂର୍ଦ୍ଧ ହେବ ଏକସ୍ତର,
ଚହ୍ଲବ ଛାତରେ ଧନେ ପ୍ରୀତି ଅଞ୍ଜ ବିଶ୍ୱାସର ଫର ।

—୪⁂୪—

## ଯୁଦ୍ଧ ଫେରନ୍ତା

ଶିଶୁକାଠ ପରି ଦେହ, କୋଡ଼ିହେଣା ଲେକ୍ତ ମାଂସପେଶୀ
ଧନେ ଥିଲା ଗଢ଼ହୀନ, ଅଭାବ ଓ କଂକାଳରେ ପିଷ୍ଟ—
ତାଙ୍କ ଦେଲା ଭାଗ୍ୟ ଗୁପ୍ତେ···ଯୁଦ୍ଧେ ଯାଇ ବଢ଼ିଗଲା ବକ୍ଷ ।
ହୃଦୟରେ ହିମାଳୟ, ଆଖି ଆଗେ କଳା ମହୋଦଧି !
ଚେଢ୍ଣମିଆନ ପେଣ୍ଟ, ସାର୍ଟ ଦେହେ,
ମଥା ପରେ ମୋଟା ସୋଲ୍ ହ୍ୟାଟ,
ହାତରେ ଓ୍ୱାକିଙ୍ଗ୍ ଷ୍ଟିକ୍,
ପ ଦତଳେ ବ୍ରଷିଅ ବୁଟ୍ !
ଦେଖିବାକୁ ଟମେଲା ଗାଆ ଲୋକେ
ଗୁଲନ୍ତି, ପିମ୍ପୁଡ଼ି ପରି ପଡ଼ିଅର ବକ୍ରରେଖା ପଥେ—
କେତେ କଥା, କେତେ ହସ, କାନ୍ଦୁ,
ନ ଧଏ ସେ ଯୋଗ କା ସଙ୍ଗତେ।
ଓ୍ୱେଦେର କକ୍ ପରି ଗାମ୍ଭୀର୍ଯ୍ୟ ମୁହଁ ତାର ବାଲ୍ଲ ଚକବାଲେ—
ହାତଗତା ଗମ୍ଭୀରତା ନୀରବ ସେ ନୟନକୁ ତାଲେ ।
ପାଞ୍ଚ ଅବା ଛଅ ମିନିଟରେ
ଦେହଟା ପରଖି ନିଏ,—ଅଛି କି ନା ଭାଙ୍ଗ ଯତନରେ ।

ଝ୍.ଡ଼ଡ଼ଏ ଧ ଳଧୀରେ—ପଡ଼ିଥାଉ ଅବା ନାହିଁ ଧୂଳି,
ତାହାର ଏ ବ୍ୟତ୍ମେରେ ଗାଁଅ ସାଥୀ ଯାଅନ୍ତି ମଜିଲ ।
ଗର୍ବସ୍ତୂପେ ଗୁଚ୍ଛ ମୂଳ ତାର
କହୁଥିଲା ପ୍ରତି ପାଦକ୍ଷେପେ ;
“ ମୋର ଗାଇଁ ନୁହେଁ ପକ୍ଷୀପୁତ୍ର”
ସେ ଦେଖିଲା ଗୃହୁଁ…
ପଡ଼ିଅଛି ଏକ କୋଣେ
ବସିଥିଲ ଅମେ ‘ଭଦ୍ରଲୋକ ?’
ଝଷାମୃଗେ ତାର ଅତେ ଗୃହୁଁ ।
ଗାଅଁ ସାଥୀ ମେଲ୍ ଭଣେ
ଡ ଙ୍କ କହେ, “ ଏ ନାଥିଅ ଅଛା
ଝଛିନାଇଟ୍ ନେ—ଚୋର”
ନାଥିଅରି ଇଳଗଲ ମଣ୍ଡା ।
“ ବାସ୍ତବକ କି ଅସଭ୍ୟ !
ଲୋକଗୁଡ଼ା କେତେ ଅଶିକ୍ଷିତ !!
ବାଝପଝ ଜ୍ଞାନ ନାହିଁ—ସାବି ଦେବେ ମାନ ଓ ମହତ !!
ମିଷ୍ଟର ଡାକ କାହିଁ ଏଠି
କାହିଁ ଏଠି ସେହି ଫ୍ୟାଶ୍ନ ସେକ୍ ?”
ନୂତନ ସଭ୍ୟତା ଅଗେ
ପକ୍ଷୀ ଏକ ଅତ ‘ଓଲଡ୍ ଟେକ ।’
ଗୃହୁଁ ଦେଲ ତବିଶଙ୍କଗ୍ରୀ କୋଣେ
ଏଟେନ୍‌ସନ୍ ଅବସ୍ଥାରେ ରହି ,
ଗୃଳଣ ଡ଼ିଗ୍ରୀ ଉଠେ ଗଲ ହାତ—
ଝଛିଲଇଟ୍ ଗୋଟି ହାତେ ନେଇ

ପୁଣିବୁଲେ ଦୁର୍ଦ୍ଦ ଅବସ୍ଥାକୁ……

୧୦ ଥବା ହୁଏ ୧୮ ଲ କ୍ଲାସ୍ !

ସୁନ୍ଦର ଶୃଙ୍ଖଳା ଅବା ଜୀବନରେ ହେଲଣି ଅଭ୍ୟାସ ।

ପୁଣି ବୁଲେ ନିଜ ପଥେ

ଏକ ଦୁଇ ଏକ ଦୁଇ ଗତ

ପୁଣି ସେହି ଖାପ ଛଡ଼ା ହବ ,

ଅପମାନ ବୋଲା କନ୍ନୁ ମତ ।

ନଇପାର ନେଳିଅ ଆକାଶ ଛୁଏଁ ଯାହିଁ ପୃଥିବୀର ଛାତ ।

କୌତୂହଳ ସେଠାରେ କେବଳ, ଯାହୁଁ ତହୁଁ ଶୀତ ଅବା ତାତ ।

୦୫✻୫୦

## ଗୋଟିଏ ଭୋର

ରାତ ଶେଷେ ଜାଗି ଉଠେ…

ଅଶରୀରୀ କିଏ ସେହି ଯା କୋମଳ ପରଶ ଲାଗିଛେ

ଜାଗି ଉଠେ, ମୁହିଁ ଜାଗି ଉଠେ !!

ତଥାପି ମୁଁ ଜାଗି ଉଠେ…

ଆଖିପତା ଅଳସରେ ଭାରି, ଖୋଲିଯାଏ ପୁଣି ମୁଦିପଡ଼େ ,

ବାତାୟନ ଆର ପାଖେ

ପକ୍ଷୀ ଯାଏ ଗାଇ ଗାଇ ସପନର ବୃନ୍ଦାବନ ପାଟେ…

ତନ୍ଦ୍ରା ପାଏ ଯବନିକା—ଅଳସ ସେ ଯାଏ ମରି ମରି

ସପନ ବି, ମରି ଯାଏ କିରଣରେ କୁଜ୍ଝଟିକା ପରି…

ଝୁରି ଆସେ ମଣିଷର ଗୀତ—
ନ ଶୁଣିଣ ତ କେବେ ଏଥା—ପ୍ରତ୍ୟୁଷରେ ଜାଗିଉଠେ ଗୀତ !
ବେଲ ... ସ୍ୱନ...
ନୂଆ ଏକ ଜୀବନରେ ଆଜ କବା ହୁଏ ସଂଗୃହଣ ।
ଫଗୁଣରେ ମଳୟ ପରଶ;
ସପନର କୋହଭରା ବସନ୍ତ ଆକାଶ;
ଅମୃତାଳ.ବଉଳରେ ଭରି
ଗୀତର କାକରଭିଜା—ରୂପ ଆଉ ବାସ ଧଏ ଢାଳି,
ଧ୍ୱନି ଜଳେ ତଳେ ଥାନେ ଥାନେ,
ସାନ୍ତାଳ ଓ ସାନ୍ତାଳୁଣୀ ଗୁରପାଖେ ଲୁପ୍ତ ଧବ୍ୟ ଗାନେ—
କାଉଚ୍ଛୁମ୍ବୀ ଡଂଶୀ ଉଠେ ଥର
ଥର ଉଠେ ସାଥେ ତା'ର କଣ୍ଠର ମାଧୁର୍ଯ୍ୟ...
ଭାଷା ତା'ର ଅବୁଝା ମୋ ପାଶେ—
ବୁଝେ ଭାବ...ଯେଣୁ ତାହା ଅନ୍ତରର ଗୁପ୍ତ ଦେଶେ ଅସେ;
ବେଦର ସଂଗୀତ ପରି ସୁନ୍ଦର ଓ ସରଳ ସେ ଗାନ—
ନବଭ ମୂର୍ଚ୍ଛନା ତା'ର—ନବନ ବ ତହିଁ ଭଗବାନ ।
କାହିଁ ଅଜ କୁଳ୍‌ଝଟିକା,
କାହିଁ ଅବା ଅଜ ପ୍ରଭଂଜନ ?
କୌତୁହଳ, କୌତୁହଳ;
ଲହ ଭରି ଦୁଇ ଅଖି କୋଣ ।
କୋର ପ୍ରଥମ ସୁର,
ମଣିଷ ଅନ୍ତର ଗୀତ—ମୂର୍ଚ୍ଛନା ମଧୁର ,
ଫଗୁଣର ମଳୟ ପରଶ,
ସପନର କୋହଭରା ବସନ୍ତ ଅକାଶ,

ଏ ସବୁକୁ ଅନ୍ତରରେ ଭରି,
ଜାଗି ଉଠେ, ମୁହିଁ ଜାଗି ଉଠେ—
ଜୀବନେ ଅଙ୍କି ଲେଖା ?
ପୁଲକରେ ମୁହିଁ ଜାଗି ଉଠେ ।

—o—

## ସାଠିଆ ମା

ଶ୍ରୀପଞ୍ଚମୀ···ସୁନ୍ଦରର ପୂଜା···
ସଙ୍ଗୀତ ଓ ମଣିଷ ସଂସାରେ···ଗୁଞ୍ଜଅଣ୍ଡେ ରୂପ ସାଜସଜା ···
ମନ୍ଦିର ଓ ମୃଦଙ୍ଗର ଧ୍ୱନି,
ତାହିଁ ସଙ୍ଗେ ନବବସ୍ତ···ନାଚ ଉଠେ ପ୍ରିୟ ଏ ଅବନୀ···
ବରଷ ଥରେ ମୋ ଶେଷ,—
ମଣ୍ଡି ଆଉ ଚନ୍ଦନ ସଂଯୋଗ···
ଅକାଶରେ ଶୋଭେ ଆଖି,
କାହୁଁ ଜ୍ଞାନ, କାହୁଁ ଉପଭୋଗ ?
ଆଖି କୋଣେ ଲୁହ ଅଛେ ଜମି,
ଛୁଟି ଆସେ, ପଡେ ପୁଣି, ଦେଖି ପାରି ପାଉଛି ନରମି ।
ଯେ ବେଦନା ଛୁଇଁ ଆସେ ପଛେ,
ପୁଣି ସେ ଅଧିକ ପରେ, କିଏ ଶୋଭ ସେ ସବୁକୁ ନ.ରେ ?
କିଏ ଅଛେ ? କିଏ ଅଛେ ଧାରେ ?
ଲୁହରେ ଭସୁଛି ଦାଣ୍ଡ, ଆଖି ପାଆ ଲୋତକ ଗାଦ୍ଧୀ ହରେ !
ସାଠିଆ ମା, କାହିଁ କର୍ମ ତୁମ ?
ଜାଦଥିଲେ ଯମ ଅଛେ, ନକାଣୁ କି ଜୀବନରେ ବନ୍ଧୁ !

‘ସାଧୁ ଅରେ, ସାଧୁଅ, ସାଧଅ’
ସାଧୁଅ ମା ଡାକୁଥିଲେ—‘ସାଧୁଅ’—ସେ ବଡ଼ ବେପରୁଆ ।
ସାଧୁଅ ମା ବସି ପଡେ…
ଜମର ଡାକୁଣୀ ଯାଏ…ହାତ ମୁଠା ବଙ୍କା ବାଉ ଧରେ ।
ଗହ୍ୱରିଆ ଆଖୀ ବେନି ତାଂର…
ନୋହିଲେ ରଜନୀ, କାହିଁ ବସୁଧା ଏ ନୂଠୀ ଲହୁ ଭାବ !
ଏ କାଳେ ଦେ ଛେପେ ଇନ୍ଦ୍ରଜାଲ,
ନୂଆ ଚମ ଦଶେ ପୁନା—ଗହ୍ୱରିଆ ଆଖି ଢଳ ଢଳ…
ମଉଛବ କରେ ଯଉବନ—
ଆଖି କୋଣେ କାମ ବାଣ—ଅଧରରେ ସୁଧାର ଶ୍ରାବଣ ।
ବଣେ ଯାଏ ଗୋଧନ ଚରାଇ ,
ଶିଙ୍ଗା ଆଉ ଘଣ୍ଟି ଧ୍ୱନି…ଗଛମୂଳେ ଡାକେ ଭାଇ ଭାଇ ।
ରେବତୀ ଲୋ—ଡାକେ ଅଳିଜୁକ
ନବଅ ଗଉଡ଼ ଟୋକା—ରେବତୀର ମରମ ଏ ଭେଙ୍କ ।
ଧନେ ପୁଣି ନବଅ ରେବତୀ
ମିଳିଲେ ଦେଖିଙ୍କ ସାଥେ—ଲୁଚ ଢଳ ଉପରର ଭଳ ।
ଧନେ ପୁଣି ଅସିଲ ସାଧୁଅ—
ଥିଲ ଛପି ଯେଉଁ ଅନ୍ତରାଳେ—ଚିନ ଦୋଳେ ଯଅ! ଶୁଂଙ୍କୁଅ
ଶାଶୁ ଆଉ ଶ୍ୱଶୁର ଚୁଲିଲେ
ଦୁନିଅର ମୋହ ଛାଡ଼ି—ଦୁଇ କୋଡ଼ି ଦଶ ବରଷରେ
ନବଅ ବ ଛାଡିଲ ସଂସାର,
ଯଉବନ ଗଲା ଛାଡ଼ି     ମରଟଲା ଆଖି ଲୁହ ଧାର
ସଧୁଅ ଓ ବନ୍ଧୁ ଠିକୁ ଗୁହ୍ନ
ଉଛୁଳିଲା ପୁଣି ଆଖି ,     ବନ୍ଧୁ ଯେବେ କହୁଦେଲା ନାହିଁ

ଥରେ ଦରେ ଗୁର ଗୋଟି ବନ୍ଧୁ
ପାଦ ଦେଇ ଗଲେ ଗୁଳ, ରକ୍ଷିଗଲେ ଏକା ତାଙ୍କ ଲହୁ
ଲହୁ ଲୁଚେ ବୁଢ଼ୀ ଆଖି କୋଣେ—
ବଂଶର ସନ୍ତକ ନାହିଁ ········ଠେଙ୍ଗା ଧର ସାଧୁଅଟା ଜଣେ ।
କେଉଁ ଦେଶେ ଥିଲା ଝାଡ଼ାଖଣ୍ଡ;
ଟାଣି ନେଲା ସାଧୁଆକୁ , ନ ପାରିଲା ବୁଢ଼ୀ ଅଟକାଇ
ଖାଦ୍ୟ ଖାଦ୍ୟ ଧନ କବା ସତ ,
ମରଣ ମଣିଷ ନୁହେଁ— କି ଲହ୍ୱାରେ ଗଡ଼ା ତାର ଗାତ !
ସବୁ ଲୁହ ଅଜ ହୁଏ ଠୁଳ
ସାଧୁଆ ମା ଖାଏ ନାହିଁ ମୃତ୍ୟୁ ଅବା ଦୁନଅରେ କୂଳ ।

ଅଜି ଶୁଭେ ସାଧୁଆମା ପଣଅରେ ବାଜ ଡେଇଁ ମାରି···
ସାଧୁ ଅରେ, ସାଧୁ ଅରେ, ଅଜାଣତେ ଡାକଇଏ ଘୁଞ୍ଚି···
ଉପରେ ଅକାଶ ହସେ,
ହସି ଉଠେ କେଉଁ ଘର ଦଣ,
ଗୋବର ପାହାଡ଼ ହସେ ,
ସାଳଦୀରେ କୁଲୁ କୁଲୁ ସ୍ୱନ ,
ପାଦ ତଳ ମାଟି ହସେ;
ହସି ଉଠେ ବିଲର ସବୁଜ—
ତଥାପି ବୁଢ଼ୀଟା ଡ଼ାକେ ସାଧୁଆରେ ଫେରି ଆଉ କୋଳ,
ଯେନଯାଅ ମୋତେ ସଙ୍ଗେ ତୋର,
ସାଧୁଆ କେଉଁଠି ରହେ—ଦସ୍ୟୁଟିକେ ହୁଏ ନାହିଁ ଭାର !

—:※:—

## —ରାଜା ଓ ରାଣୀ—

କୁହୁଡ଼ର ମର୍ମ ଲତା କୁଞ୍ଜ ପରଶେ
ଝରି ପଡେ ବଉଳର ରେଣୁ...
ଟୋପା ଟୋପା ମହୁ ପଡ଼େ ଝରି,
ବାଜି ଉଠେ କାନୁ ମୁଗ୍ଧ ବେଣୁ...
ଉପବନେ କହନ୍ତି ସମ୍ରାଟ—
"ରାଣୀ ମୋର, କହ ଜାଣ ତୁମେ ?"
ନୀରବ ରହନ୍ତି ରାଣୀ...
"ରାଣୀ ମୋର, କହ ଜାଣ ତୁମେ ?"
ପ୍ରଶ୍ନ ଗଲା,ନାହିଁ ତା' ଉତ୍ତର...
ନୀରବରେ ରାଣୀର ନୟନ—
" ଜାଣ ରାଣୀ, କହ ତୁମେ ?
—ରାଜ ନେତ୍ରେ ଲହରର ଶ୍ରାବଣ
ମିଶିଯାଏ ହେମନ୍ତର ଛନ୍ଦ ,
ମିଶିଯାଏ ଛନ୍ଦର ବନ୍ଧନ,
କଣ୍ଠେ କଣ୍ଠ, ଦୁଇ ହୃଦ ଏକ,
ଝଙ୍କା ଦେଉଛି ଝଙ୍କାର ମିଳନ ।
ଲଭିଯାଏ ମନର ତର୍ପଣା,
ହୃଦୟର ରହସ୍ୟ କନ୍ଦରୁ ବହୁ ଆସେ ପ୍ରୀତିର ଝରଣା ।
କୁହୁଡ଼ିର କୁଟିଳ ପରଶେ, ଝରିପଡେ ଅମ୍ବର ବଉଳ ,
ମୁକ୍ତି ହୀନ ପୃଥିବୀଟା ଗଲା ମଳୟର ପରଶେ ଆକୁଳ ।
( ସଖୀ କହେ, ଦେଲନି ଉତ୍ତର !
ସ୍ୱାମୀ କହେ; "ଏତେକ ଦୁର୍ବଳ ?"

ନିଷ୍ଠୁର ଦେଶର ଦେବତା—

ତଥାପି ବି, ଦେବୀ ନିଷ୍ଠୁର ! )

ମୁହିଁ ନେସି ସମ୍ରାଟର ବକ୍ଷେ

ପଦ୍ମଚନ୍ଦ୍ର ରାଣୀ—

" କଏ ତୁମେ, ପାଇବ କି କହ ?"

ହସି ଉଠେ ଗୋଧୂଳିର ସୂର୍ଯ୍ୟ

ଉପବନ ଅନ୍ତରାଳେ ରହି ।

( ସଖା କହେ, 'ଦେଲନି ଉତ୍ତର' !

ସଖୀ କହେ, ତୁମେ କି ପାଗଳ ?

ବୁଢ଼ା କହେ, 'ଏଇ ତ' ଜୀବନ—

ସବଳ ବା କେଉଁ ସେ ଦୁର୍ବଳ" )

କୁହୁଙ୍କର କୁହୁଉଠା ସ୍ନେହ—

ମଳୟର ଶୀତଳ ପରଶ—

ଉତ୍ସବର ନିଲଠା ପୀରତ—

ପୃଥିବୀଟା କେବଳ ଅବଶ ।

—୦—

## ଧାନ

ଶ୍ରାବଣ ସବୁଜ ଧାନ କାହା ହାତେ ଢେଳି ଦେଲେ ଜାଣେ ?
ମାର୍ଗଶିର ସୁନା ପୁଣି କାହା ହାତେ ଟେକିଦିଏ ଟାନି ?
ସେହି ଯେ ମଣିଷ ମୁହିଁ···ଅସଂସାରୀ ମଣିଷର ପ୍ରାଣେ
ଯେ ଗୁପ୍ତ ବିପ୍ଳବ ଜାଗେ, ତାହା ହାତେ ସତନୁ ଅତନୁ ।
ତାହା ହାତେ ସବୁଜ ଓ ସୁନା—
ରୂପଲଭେ ତାହା ହାତେ ଏ ବିଶ୍ୱର ସୃଜନ ନମନା ।

ଯେ ଦେଇ ସବୁଜ'ସୁନା ଝରନ ଯେଉଁ ବାର୍ତ୍ତିଶ ହାତରେ
ତାଙ୍କର ସ୍ୱକାଳେ ଉଠ ଶୁଣି ଦେଇ ଜବର ଆଲେଖ୍ୟ—
ଉଜାଡ଼ ଚଢ଼ିଲା ନଇଁ···ନଇ ଗଲା ଅଛ ନମ୍ର ଭରେ,
ମାଆ ଯେ ସଂହିତ କୋଟଲେ—କରେ ନାହିଁ 'ନାହିଁ'ର ଉଲ୍ଲେଖ-
ମୃତ ମାଯେ ଗୃହେ ପୁଣି ଦାଅ—
ଯେ ଚଢ଼ିଲା ନେଇ ପ୍ରେମ, ଅତ ଆରେ କାଏ ସେବ ସାହା !
ସ୍ରଷ୍ଟା ଓ ସୃଷ୍ଟିର ଲକ୍ଷ୍ୟ ଏକା ହୁଏ—ସ୍ରଷ୍ଟାର ବାସନା
ସୃଷ୍ଟି ସଙ୍ଗେ ଯାଏ ମିଳି···ଯେ ଜନମ, ସେହିତ ଟି ମରଣ !
ଜନମେ ଆନନ୍ଦ, କାନ୍ଦୁ ମରଣରେ କା ଲାଗି ଶୋଚନା ?
ଅଭିନ୍ନ ଦୁଇଟି ଯାକ—ଜୀବନରେ ଜନମ ମରଣ ।
ଅଛ ନମ୍ରେ ଯିବ ସ୍ରଷ୍ଟା କୋଳେ
ମରଣ ସେ ଅଲିଙ୍ଗନ—ସ୍ରଷ୍ଟା ସାଥେ ମିଳିଯିବ ଖେଳେ

—×—

—ବୃଦ୍ଧ—

ଉଆର କ୍ୱାଲିଟି ବାଲେଶ୍ୱର ରାସ୍ତା
ନାଲିଧୂଳି ଫର ଫର
ଖାଲି ଗୋଡେ ଗଲେ ବାହାରିବ ଲହୁ
ଚିକ୍‌ସାରେ ଧଡ଼ ଧଡ ।
ଅଖାଡୁଆ ତା'ର ଧାରେ
ଫେବ୍ରୁଆରୀର ତଳୁଠ ଦ' ପହରେ
ପଡ଼ିଥିଲା ଏକ ନାଗୀ'ବ ପ୍ରାଣୀ—ଶବ ହୁଏ ଅନୁମାନ—
'ଧର୍ମ ହେବ ହେ ପଇସାଏ ଦଅ'—କଏ କହେ ନାହିଁ ଥ୍ରାଣ !
ଝୋଟ ଯର ଦଶେ ବୃଦ୍ଧ ଗୁଡ଼ାକ
ମସ୍ତକ କେଶ ରାଶି,

ଅକ୍ଷି ପଶିଯାଏ କେଉଁ ଗହ୍ୱରକୁ
ନାକ ତଳେ ପଶି ନାସି,
ଦେହ ଚମ ମୋଡ଼ି ମୋଡ଼ି—
ନାଲିଆ ଧୂଳିରେ ଜଡ଼ି
କରୁଣତା ସାଙ୍ଗେ ଘୃଣ୍ୟତା ଆଣି
ଅଠଗ କରୁଥିଲା ଠିଆ—
କିଏ କହିବ ସେ ବୁଢ଼ା ଅନ୍ତରେ
ନଚାଉଛି ଏ ଦୁନିଆ ?
ଅଛି ବୋଲି ତା'ର ଘର,
ଅଛି ପ୍ରାଣେ ତା'ର ଦୁନିଆର ଯେତେ ପୀରତି ଲୁହର ଝର ?
କିଏ କହିବ ତା କାଖରେ ଝୋଲୁଛି ହାଡ—
ମଣିଷ ଗୁଡ଼ିଲେ ଦୁନିଆ କି କେବେ ଗୁଡ଼ିବ ମଣିଷ ଭର ।
ଦୁଇଦିନ ପରେ—ଗୋଧୂଳି ବେଳରେ
ଧୂଳିର କୁହୁଡ଼ି ଉଠେ...
ସଭ୍ୟ ମଣିଷ ତାହାର ଭିତରେ
ଗାଡ଼ିର ପୁଲକେ ଲୋଟେ...
ଏଟମ୍ ଯୁଗର ରଙ୍ଗ ପତକା ତୋଳି
ପଡ଼ି ରହେ ତହିଁ ବୃଦ୍ଧ ଏକାକୀ
ଧୂଳିରେ ଦେହଟା ବୋଳି...
ଅବଶ ତା ତନୁ ପରେ
ଗୃହବରଷର ଲୋଟେ ଝଟିଏ
ଲୋଟି ପଡେ ଛଳ ଛଳେ—

ଯେଉଁ ଗୁଡ଼ଟାର ହାଡ଼ ଗଣି ହୁଏ ସନ୍ଧ୍ୟାକଠରେ ଗୋଟି ଗୋଟି,
ତାହାର ତଳେ କି ହୃଦୟ-ଦରଦ-ଝରଣା ଯାଉଛି ଲୋଟି !

ଗନ୍ଧର୍ବଙ୍କ ଯେଉଁ ଅଶ୍ରୁ ଯୋଉଛାନ୍ତି ତା’ଅନ୍ତରେ ଅଙ୍କୁ ଲକ୍ଷ—
ଲଳସ୍ଥାନ ସେହି ଶେଭା ପାନିହାରେ ଅଙ୍କୁ କ’ଅସ୍ଥାର ମୋହ !
ବିଶ୍ୱେ ଆଜ ମୁଁ ଦେଖେ ଗୃହଅଭେ ହୃଦୟର ଗୃହ୍ର ଲୀଳା-
ଶୀରତ ପ୍ରବାହ ବହୁଥିଲ, ବହେ, ବହୁଥିବ ଚିର ମାସ ।
ପରମାଣୁ ବୋମା ଧ୍ୱଂସ କରିବ, ଧ୍ୱଂସ ହେବ ସେ ପୁଣି—
ହଲ ପାଇବାର ନିୟମ ପରଣ କହୁଥିବ ଭୂମି ଭୂମି
ବୃକ୍ଷ ଅଳି ଯା କହେ—
‘ମଣିତ ମଲେବ୍ର ମଶାଣୀ ପାଉଁଶେ ଶୀରତ ବହି ରହେ ।’



## ଦୋଳସାହିରେ ବରଷେ

ବରଷେ ସମାନ ବାରମାସ ଅବା ତିନିଶ ଷାଠିଏ ଦିନ
ମୁଁ ବିତାଏ ଏଇ ଦୋଳସାହି କୋଳେ···ବସ୍ତି ତଟରେ ହୁଏଲୀନ
ଧୀରେ ଧୀରେ ସେହି ଦିନଟି ଯେଦିନ ଆସିଲି ପ୍ରଥମ ଏଥି
ଦେଖିଲି ପ୍ରଥମ ଏ ଥାନର ଗୃହ୍ର ଲୁଆ ଓ କେତକୀ ବାଡ଼ି-
ଗୁଡ଼ିକ ଯେଦିନ ପଟେ ମୋର କେତେ ମାନ ଅଭି ଅଭିମାନ-
ସେଦିନର ଗୃହେ ଭାଙ୍ଗିଗଲା କେତେ ଲୋକଙ୍କର ମୁହାଁଠାଣି-
ଗୃହୁ ଗୃହୁଁ ଗଲା ବରଷଟିଏ ବିତି ଅଖିର ପଲକେ ସିନା !
ଏହିପରି ଦିନେ ଭାଙ୍ଗି ଯିବ ମୋର ଅଜର ଜୀବନ ବୀଣା ।
ବରଷ ଭିତରେ ଦୋଳସାହି ମୋତେ ନଦେଇଛି କେତେ ସ୍ନେହ
ତା’ର ଆତ୍ମଦୋହା, ତା’ର କୁଣ୍ଡୀନାଇ, ତା’ର ସମତଳ ଦେହ-

ଜୀବନର କେତେ ସତ୍ୟ ଆଶା ଏଠି ହୋଇଥିଲେ ପୁଞ୍ଜୀଭୂତ-
ସ୍ୱପ୍ନମାନସର କେତେ ଲକ୍ଷ ଲକ୍ଷ ଏଠି ହୋଇଅଛି ଘନୀଭୂତ !
ଦୋଳମଞ୍ଚ, ତୋର ପୀରତି କେ ଅଛି ଧନ,
ସଙ୍ଗୀ-ଭୃତ୍ୟେ କେତେ ଜୀବନ୍ତ ଯେ ତୋର ପୀରତିର ଆକର୍ଷଣ ।

—୦—

## ହୃରମରେ

ଯଦି ହୋଇଥାନ୍ତ ଚଞ୍ଚଳ ଝାଲେସୀ ମାସ୍ପାଦନ ଏହି ଯୌବନେ,
ମଳୟର ସାଥେ ବାସ ତେଜି ଖେଳ ଖେଳନ ! ନିତ୍ୟ ଥିଲ ମନେ—
ଭିତରର ଦେହ ଆବରଣ ଗୁଡ଼ ଉଡ଼ି ଯାଉଥିଲ ଦୂର ଦେଶେ,
ପାଇବାକୁ ଠିକେ କେ, ରହିବାକୁ ପୃଥିବୀରେ ଠିକେ ନୂଆ ବେଶେ-
ଅଛି ନାହିଁ ସେହି ଝାଲେର ଚଞ୍ଚଳ, ଅଛି ନାହିଁ ସେହି ଯୌବନ—
ବସନ୍ତ ପରେ ସେ କୁହୁଡ଼ି ପାଇଁ ଫଗୁଣ ଝୁରୁଛି ଅନୁକ୍ଷଣ ।
ମଳୟ ଯାଉଛି ବହି ହତାଶରେ—ତରୁଣୀ କରୁଛି ନତ ମଥା—
ଉପହାର ନାହିଁ ଭେଟିବାକୁ ପ୍ରିୟ—ସମ୍ବଳ ହୁଏ ଗୀତ ବ୍ୟଥା ।

—×—

## ଉଦ୍‌ବୋଧନ

ମାଆ ବସେ, ଛୁଆ ଯାଏ ଉଡ଼…
ଅଳ୍ପ ଦୂରେ, ଅତି ଅଳ୍ପ ଦୂରେ,
କାନ୍ଦ ହୁଏ ତେଣା ତାର କ୍ଳାନ୍ତ,
ଫେରେ ଏଣୁ, ମାଆ ସ୍ନେହ ପୁରେ ।

ଝଣ୍ଟୁ ଯାଙ୍କ ଡିଲଟିର ଥାଣ୍ଟେ,
ଡେଣା ଝାଡ଼ି, ଦେହ ପରେ ତା'ର
କହେ," ମୋର ସ୍ନେହ ଜିଳୁଲ ରେ,
ଉଡ଼ିବାକୁ ଲାଗୁଛୁ କି ଡର ?
ଭସ୍ମ ଛାଡ଼ି ଉଡ଼ି ଯାଅ ପୁଣି—
ହୃଦୟରେ ବାନ୍ଧି ଥୁ ସାହସ,
ବୀର ପକ୍ଷେ ଜୀବନ ସୁନ୍ଦର
ଭବିଷ୍ୟତେ ଅଣ ତୁ ବିଶ୍ୱାସ ।
ଅନିଷ୍ଟ ତ ହେବ ସୁନିଶ୍ଚିତ—
'ନ ପାଇବା' 'ପାଇବା'ର ସୁରେ
ବାଜେ ଶୁଣ ସଙ୍ଗୀତଟି ମୋର
ଛନ୍ଦାବୋଲା ଜନପଦନେ ଦୂରେ !
ଉଡ଼ିଯାଅ, ଉଡ଼ିଯାଅ ବାପ,
ଜୀବନର ରୂପରେଖା ଦେଖି
ବେହୁ ଅଣ ଦୂରର ବାରତା
ଯହିଁ ବନ୍ଧୁ ଅଛୁ ତୋତେ ଲେଖି !"

—×—

# କିଏ ଡାକ ତୁମେ ?

କିଏ ଡାକେ ? କୁହ, କୁହ, କିଏ ତୁମେ ଡାକ ?
ଶୁଣି ନ ତୁମଙ୍କୁ ତେବେ—
କିଏ ତୁମେ, କହ, କିଏ ଡାକ ?
ଏକାକୀ ମୁଁ ରହେ ବସି
ତଥାପି ମୁଁ କରେ ନାହିଁ ଭୟ—
ସ୍ୱର ଅବା ଶବ୍ଦ ତୁମେ—
ମଣିଷ ତ !
ମଣିଷରେ କରେ ନା ସଂଶୟ ।
ଗୋପନରେ ବସିଅଛି ମୁହିଁ
ହାରଗ୍ରୀଭ୍ସ ଅକ୍ସହଟ୍ ପର
ଜୀବନର ସମସ୍ୟା ସାଧନେ
ଧନସ୍ୱତ ନିତ୍ୟ ଯାଏ ସବୁ—
ଜୀବନଟା ହେବ ତେବେ ଧନେ
ସହଜ ଓ ସରଳ ସୁନ୍ଦର,
ସେ ଧନକୁ ଅପେକ୍ଷା ମୁଁ କରେ···
ତୁମେ ଯଦି ସାଥୀ ହେବ ମୋର,
ଉତ୍ତରକୁ ଅସ ତୁମେ ତେବେ—
କହ ମୋତେ ମଣିଷ ସଂସାରେ
ମଣିଷର ଯୁଗ ହେବ କେବେ ।

—o—

## ବସନ୍ତ ପ୍ରଭାତ

ଫାଲ୍‌ଗୁନର କୁଜ୍‌ଝଟିତ ମଳିନ ପ୍ରଭାତ
ଫୁଲ୍ଲ ଉଠେ ଜୀବନ ଶୀହାରେ
ବାୟୁସ୍ତରେ ଶୀତ ସ୍ପର୍ଶ ଦେଇ,
କାଟିଯାଏ ପଲ୍ଲବର ଲୁଚେ ଉନମତ,
ସିଞ୍ଚିଯାଏ ସୁଧାର କଣିକା
ଦୂର୍ବାଦଳେ । ଲୁଣ୍ଠ ଅବା ସେଇ !
ଢୋଲର ଘରଦ ଅଜ; ରଂଗର ଉତ୍ସବେ
ଭୁଲିଯାନ୍ତା ମଣିଷ ସଂସାର
ଜୀବନର ଦୁଃଖ, ଦୈନ୍ୟ ଯେତେ,
କିନ୍ତୁ ତର ସ୍ରୋତେ କର ସମାପନ ଧା’ନ,
କାହିଁ କିଂତୁ ସେ ମହା ଉତ୍ସବ ?
ନିମ୍ନଗାମୀ ମଣିଷ କି ଏବେ
ସତେ ଏ ନବୀନ ଯୁଗେ ! ମନେ ଜାଗେ ଆଜି
ପୃଥିବୀରେ ଅଦମର ଯୁଗ—
ଜେତେ ଲକ୍ଷ, ଜେତେ ଲକ୍ଷ ଘାଲି
ମଣିଷ ଗନ୍ଧର୍ବ ଗୁଣ୍ଡ ସାରା ପୃଥିବୀର
ବକ୍ଷପଟରେ ପୃଥିବୀର ସ୍ନେହ
ଉପଭୋଗେ କରନ୍ତେ ପଶାଳି
ଅଂଗ ଢାଳ ! ପୃଥିବୀର ଉତ୍ତଳା ଅହ୍ୱାନ
ଘଟିଅଛୁ ଅଜିର ଦୁନିଆ...
ରଚିଅଛୁ ଘରଷ୍ଠ ଭ୍ରାତୃତ୍ୱ —
ଅହ୍ୱାନ ସେ...ସୃଜନର ବେଦିକା ଅହ୍ୱାନ

ରଂଧ୍ରେ ରଂଧ୍ରେ ପ୍ରତିଧ୍ୱନି ଶୁଣେ
ତାହା ହାତେ ମଣିଷ ମହତ୍ୱ ।
ପୃଥ୍ୱୀର ଆହ୍ୱାନ ତାହା—ସତ୍ୟ ଗୁଣେ ଭରା
ସେ ଆହ୍ୱାନ—ସୁନ୍ଦରର ଆଶା,
ସେ ଆହ୍ୱାନ—ପ୍ରେମର ଆହ୍ୱାନ,
ସୂର୍ଯ୍ୟ ଚନ୍ଦ୍ର ଉପଗ୍ରହ ଗ୍ରହ ଓ ନକ୍ଷତ୍ର
ଶୁଣି ସେହି ଡାକ ଆନନ୍ଦରେ
କରନ୍ତି ଉନ୍ମତ୍ତ ପ୍ରାଣ ।
ଶୁଣି ତାହା ଏତେ ଦୂର ଆସିଛି ମଣିଷ,
ଗଢିଅଛି ଏ ଯୁଗ ସଭ୍ୟତା—
ପୁଣି ସେହି ଆହ୍ୱାନର ସୁରେ
ଯିବ ଉଡ଼ି ଏ ପୃଥିବୀ କବଳର ପାରେ
କେତେ କଥା ଗଢିବ ସେ ପୁଣି
ନୂଆ ଭାବେ, ସେହି ନୂଆ ସୁରେ ।
ହେ ମଣିଷ, ଭୁଲିଯାଅ ଅନ୍ତରର ଏ ଭଲ—
ଭୁଲିଯାଅ କାହିଁ ଲାଗି ପଥ ?
ଶୁଣ, ଶୁଣି, କିଏ ରହେ ଡାକି,
ଭାସିଯାଅ ସେ ଡାକର ଉଚ୍ଛ୍ୱସିତ ସ୍ରୋତେ—
ଅକାଣ୍ଡିତ ତୁମ ଦୃଷ୍ଟିପଥେ
ନ ରହୁ ଏ ସ୍ୱାର୍ଥସୃଷ୍ଟି ବାଧା ।।
ସତେ ମୁଁ ବୁଝିବି ଦିନେ ରଂଧ୍ରେ ରଂଧ୍ରେ ସୃଷ୍ଟିର ହୃଦୟେ ।
ପ୍ରେମର ଝଙ୍କାର ଯେତେ ସବୁଥିରୁ ତିଭଙ୍ଗୀ ଅନୁରାଗ !
ଏ ଆକାଶୁଁ ତଳକୁ କେତେ ଲକ୍ଷ ଲକ୍ଷ ଦେଖିବ ଆକାଶ !
ନବ ଗନ୍ଧେ, ନବ ରୂପେ ସତେ ମୁହିଁ ହୋଇବି କୁସୁମ !

# ମଳୟ ଓ କଳ୍ପନା

"କାନ୍ଦୁଛ କିଂପା ଗୋ ପ୍ରିୟା ? ଖୋଲ ଆଖିପତା !
ଲୁଛିବ ସ୍ପନ୍ଦନ ଜଳେ ତୁମ୍ଭ ମୁଖଧତା,
ଦାଅ ଗୋ ମିଶାଇ ସାଥୀ । କେତେ ଦିନ ପରେ
ଆସିଛୁ ଅକୁଳ ହୋଇ ତୁମ ପାଶେ ସଖି,
ଅକୁଳ ନ କର ଅଉ ନୟନରେ ରଖି,
ଚନ୍ଦ୍ରର ଏ ଉତ୍ପ୍ରାସ୍ୟ ।"

"କିଏ ତୁମେ ଡାକ ?"
"ନ ପାରୁ କି ଚିହ୍ନି ପ୍ରିୟା—ହୋଇଲି ଅବାକ
ଦେଖି ଏ ତୁମର ଭାବ—"

"କିଏ ଗୋ ମଳୟ !
ଆସିଛ ଗୋ କେତେ ଦେଶ ବୁଲି ଭର ଜୟ !
ଅଭାଗିନୀ କଥା ଥିବ ବୋଲି ତୁମ ମନେ
ନ ଥିଲି ତ ମୁହଁ ଭାବ—"

"ନ ଧର ଗୋ ମନେ—
ଭୁଲି କି ପାରିବି ସାଥୀ—ହୃଦୟ କନ୍ଦରେ
ତୁମେ ମୋର ରାଣୀ ଚିର—ତୁମର ଅନ୍ତରେ
ଯହିଁ ଯାଏଁ ତହିଁ ବୁଲେ—ଜୀବନେ ନ ଜାଣି
ଆକୁଳେ ବା ଆନନ୍ଦରେ ସ୍ନିଗ୍ଧ ସମର୍ପଣ

ଜନ୍ମାନ୍ତର ହୁଏ ତା'ରେ, ନାହିଁ ତହିଁ ମନ,
ଜୀବନେ ପୂର୍ବରୁ ଖାଲି ଅନାଘ କଷଣି—
ପଛ କଥା କିଂପା ଭାବ ?—ସେ ଯେ ଗୋ ଭ୍ରାନ୍ତିତା—
ଆସ କୋଳେ ଜୀବନର ଅଞ୍ଜଳି ସୁଧା—"

"ଠିବା କାହୁଁ ?"

"ଦେଖିବା ଗୋ ସାଳତୀ ଶୀର୍ଷଲ—
ଦେଖିବା ତାହାରେ ରଙ୍ଗେ ଯେ ଅଙ୍ଗ ଚନ୍ଦନ—
ଛାୟା ଓ ଅନେକ ଲୀଳା ସ୍ପଂଦ ସଂଗ ବନେ
ସ୍ନିଗ୍ଧ ଓ ଶୀତଳ ସ୍ପର୍ଶ ରହସ୍ୟ ଯେ ଥାଏ
ଅବୃଷ୍ଟା ଗୀତିକା ଗାଇ ବୃକ୍ଷେ ଧୀରେ ଧୀରେ—
ଯାହାର ଅନ୍ତରେ ପୁଣି ଏକାକିନୀ ସ୍ବରେ
କୋକିଳର କାନ୍ତପ୍ରିୟା—ସେ ରହସ୍ୟ କଳା
ହସିଲେ ନେଇ, 'ଅବୃଷ୍ଟା'ର ଛନ୍ଦେ କରି ଭରା
ଅନ୍ତର ଅମର କରି ଯିବା ସ୍ରୋତେ ଭାସି—
କେତେ ପୁଷ୍ପ, କିଶଳୟ ସ୍ବରୂପ ପ୍ରକାଶି
ସୁଗଂଧର ଉପହାର ଦେବେ ଯେଗୋ ପଥେ—
ସେସବୁଙ୍କୁ ଧରି ପ୍ରିୟା ଚାଲି ଯିବା ସାଥେ
ଅନନ୍ତ ସାଗର ବକ୍ଷେ—ଶୀତଳ ଶୀକର
ଲଭିବା ତାହାରି ପ୍ରାଣେ—ଦେଖିବା ଧରାର
ଯେତେ ଯେତେ ରମ୍ୟ ରୂପ—ତହୁଁ ତୀର ମଧ
ଯିବା ଉଠି ଆକାଶରେ—ବାୟୁ ସ୍ତର ଚରି
ଯିବା ଯହିଁ ନାହିଁ ବାୟୁ—"

"ପାରିବା କି ପାଇ ପ୍ରିୟ ?"

"ନା କରିବ ଭୟ—
କୋଳେ ମୋର ଥାଇ ତୁମେ ପାଇବ ଅଭୟ;
ଚାହୁଁ ଥିବା ଚନ୍ଦ୍ରାଲୋକେ—ଜ୍ୟୋତ୍ସ୍ନାର ତରଙ୍ଗେ,
ଚାହୁଁ ଥିବା ଗ୍ରହ ଆଉ ଉପଗ୍ରହେ ରଙ୍ଗେ
ଝଲି ଝଲି ଦେବୀଙ୍କର ପ୍ରେମ ନାଟକାରେ,
ଦେଖିବା ସାରା ଏ ସୃଷ୍ଟି...ଯାହାର ଇଚ୍ଛା ପର
ସୃଷ୍ଟିର ଏ ମହା ସତ୍ୟ. କର ଅନୁଭବ
ତାହାର କୋମଳ ସ୍ପର୍ଶ, ଦେଇ ପଲ୍ଲବ
ଶର ଶଯ୍ୟ 'ବାସ୍ତବ'ରେ, ଲଭିବା ଜୀବନ
ଜଳନ୍ତ ନ କର ସ୍ପୃହା, ହେବ ଅକାରଣ
ଏ ମୁହୂର୍ତ୍ତି ଆଳସ୍ୟରେ, ଅଂସ କୋଳେ ମୋର—
ନ ପଡ଼ିବା ତଳେ, ଏଣୁ ପଣତର ତୋର
ଭିଡ଼ ମୋ ସ୍କନ୍ଧରେ ସାଥୀ, ଗଣ୍ଡେ ମୋ ଅଧର
ଥାପି ତୁମେ ରହ ଧୀର—ନ ହୋଇ କାତର।"

—o—

# ଶିଳ୍ପୀ ଓ ମଣିଷ

ଏ ସଂସାରେ ନୁହେଁ କିଏ ଶିଳ୍ପୀ ?
ନାହିଁ ଯାରେ ସୃଜନର କଳା ?
ଶ୍ରେଷ୍ଠ ଶିଳ୍ପୀ— ସ୍ରଷ୍ଟା ହାତେ ସର୍ବେ,
ସ୍ରଷ୍ଟା ହାତେ ମଣିଷ ଓ ଧରା ।
ରୂପଶିଳ୍ପୀ ରୂପର ପସରା
କର ଗୁଲେ କି ମହା ଆଦର୍ଶେ ?
ଆଦର୍ଶ କି ଆଦର୍ଶ ନିରତ !
ଅତୃପ୍ତିର ସୁଧା ତହିଁ ବର୍ଷେ ।
ଯେଉଁଥି ଆହା, ଯେଉଁଥି କେତେ ତା'ର !
ନବୀନତ୍ୱେ ସେ କେତେ ଆସକ୍ତ !
କେତେ ତୁଳି ତୋଳି କରେ ନଷ୍ଟ !
କେତେ ରଙ୍ଗେ ନିତ ଉନମତ
ମଣିଷ ମୁଁ…ସ୍ରଷ୍ଟାର ତୁଳିକା!
ମୋ ଦେହରେ ଶିଳ୍ପୀର ପୀରତ…
ଧରଣୀ କମା ରୂପରେଖ ଭୂମି
ଶିଳ୍ପୀ ଆଖି ପରଖେ ମୋ ଶକ୍ତି ।
ତା' ଇଚ୍ଛାରେ ମୋହର ରଚନା
ତା ଇଚ୍ଛାରେ ଭଙ୍ଗିଦିଏ ପତନ—
ନୂଅରୂପେ ଦେବ ପୁଣି ଦେଖା
ମୁହିଁ ନିତ ଶିଳ୍ପୀ ପ୍ରୀତି କିଣେ
ନୁହେଁ ଖାଲି ଧରଣୀର ମୋହ
ଏବୋର ପଞ୍ଚ ମୋ ତନୁ, ମୋ ଅନ୍ତରେ ସାରା ସୃଷ୍ଟି ମୋହ ।

—o—

## ହୃଦୟ ଓ ନୟନ

ବାହାରର ଝଂଝା ଓ ବାତାସ,
ବେଦନା ପୁଲକ ଭରା ଶ୍ରାନ୍ତ କ୍ଲାନ୍ତ ବିଦଗ୍ଧ ଆକାଶ
ମଣିଷର ନିରୁକ୍ତ ବେଦନା
ସୃଷ୍ଟିର ବେପଥୁ ଗାତ୍ର, 'ଅଦୃଶ୍ୟ'ର ନିଲିପ୍ତ ପ୍ରେରଣା
ଚମ ହାଡ଼ ନାଡ଼ ଛୁଏ ପାର
ହୃଦୟର ବେଦୀତରେ ଖଣ୍ଡ ଅବା ଅମୃତ ଉଦ୍‌ଗାର
କେ ପଡ଼େ ଅଙ୍କିତେ ମୋର—
ଅଲକ୍ଷିତେ ଚକ୍ଷୁବେନି ତପ୍ତ ଲୁହେ ହୁଏ ଟଳ ଟଳ,
ହୃଦୟ ଓ ନୟନ ଦୋଷର
ହୃଦୟ ନିକଟରେଖା ନୟନର ମୁକ୍ତଧାରା ଝର !



## ରୂପହୀନ ରୂପପାୟୀ

ସେଦିନ ଭଙ୍ଗିତ ସନ୍ଧ୍ୟା···। ଦେଖି ମାସ ଦିନ ତାହୁଁ ମନେ
ପ୍ରକୃତର ରୂପହାଟେ ଭାବିନାର ଅନ୍ତୁ କେଉଁ ମାଡନ ?
ମଣିଷର ଅଙ୍ଗେ ଅଙ୍ଗେ ଦେଖା ଅଛି ଅଦେଖା ମର୍ମରେ
ଉର୍ବଶୀର କ୍ରୀଡ଼ାଭୂମି ସ୍ୱର୍ଗ ବୋଲା ପ୍ରଦେଶ ରଙ୍ଗରେ
ଛନ୍ଦବଦ୍ଧ,ଯେ ପରଶେ ଲଘୁ ହୋଇ ଉଡ଼ିଯାଏଁ ଦୂରେ
ରବର ବେଲୁନ ଯଥା ଉଡ଼ିଯାଏ ବାଷ୍ପେ ନୀଳପୁରେ,
ଦୂରେ ଅତି ଦୂରେ ଯହୁଁ ବ୍ୟୋମଯାନ ନ ଚଳିବ ଆଶା,
ଜ୍ୟୋତିଷଙ୍କର ଅବା ଯା' ଅନ୍ତରେ ନ ପାଇବ ହସ.—

ବରଫର ତନ୍ତ୍ରୀ ସ୍ପର୍ଶ ନାହିଁ ଅଛି, ନାହିଁ ବା ରାଗ—
ଅଷ୍ଟ କାଳ ଉପଭୋଗ, 'ଅବ୍ୟକ୍ତ'ର ସ୍ପନ୍ଦନ ପରାଗ;
ଜ୍ୟୋତ୍ସ୍ନାର ଦୋଳାରେ ଗଲି; ଜ୍ୟୋତ୍ସ୍ନା ବନ୍ଧୁ ମାନ ଏବଂକସ୍ତୁ
ଫେରିଲି ପଥରୁ ମୌନେ; ମନ୍ଦିରାରେ ନ ହୋଇ ଅସ୍ତୁ
ମନ୍ଦ ମନ୍ଦ ଗଲି ଧୀରେ...ମନ୍ଦିରାରେ ଆତ୍ମା, କି ଆନନ୍ଦ !
ଜୀବନେ ମରଣ ଅଛି ! ମୃତ୍ୟୁ କେତେ ଜୀବନର ଛନ୍ଦ !!
ଦୂରେ...ଅତି ଦୂରେ...
ଶୂନ୍ୟର ସେ ରୂପାନ୍ତିତ ପୁରେ—
ଭୁବନେଶ୍ୱରର ଦେଖେ ନୃତ୍ୟରତା ପାର୍ବତୀଟି ପର
ସ୍କନ୍ଧ କୂଳ ସ୍ଥାଣଟିକୁ ନର୍ତ୍ତନର ଛନ୍ଦେ ଦେଇ ଢାଳି
ଅଧରରେ ଲେଖି ହସ, ଅଂଗୁଠିରେ ସୃଜନର କଳା
ରଚିଯାଏ ଲକ୍ଷପୁଷ୍ପ—ମୁକ୍ତ ଆଜ ଜୀବନରେ ଚଳା
ରୂପହୀନ ରୂପଯାତ୍ରୀ ଛବି...
ସପନେ ଅକୁଳ ପ୍ରାଣ...ସେ ଛବିରେ ସ୍ତବ୍ଧ ମୁହିଁ କବି...।

---

## କାହୁଡ଼ି

ବସନ୍ତର ନୂପୁର ଶିଂଜନେ
ଯୌବନ ସଂଭାର ମେଲି ଶୋଭାପୂର ଧରଣୀ ପ୍ରାଙ୍ଗଣେ
ଫୁଟି ଉଠେ ମଲ୍ଲୀ ଓ ଅଶୋକ,
ଧବଳିମାର ଅଂଗେ ଘଟେ ଜରାସିକ୍ତ କୁସୁମିତ ନିର୍ମୋକ ।
କୁକ୍କୁଟିକା ଦଏ ନାହିଁ ଦେଖା,
ଶ୍ରାନ୍ତ ଆକାଶ ତଳେ ମଳୟର ସ୍ପର୍ଶ ହୁଏ ଲେଖା ।

କୁଜ୍‌ଝଟିକା ଢଏ ନାହିଁ ଦେଖା !
ସିକ୍ତ ଦେହେ ତନୁ କଂପେ ? କାହାର ଏ ଉକ୍ତ ନୀର ରେଖା ?
ଅବସ୍ଥିତ କଂପା ଯାଏ ମନ ?—
କୁହୁଡର ସ୍ପର୍ଶେ ଯଥା ଚୂତ ବୃନ୍ତୁଁ ପୁଷ୍ପ ପଡ଼େ ଝରି !
ପଥିକ ମୁଁ—କାହିଁ କନ୍ତୁ ଦେଥ ?
ସନ୍ଧି କୋପେ ବନେ ଭିଲ—ଅଂଗ ସାସ୍ ଅତ ନିସତ୍ତ୍ୱ ।
ଛୁଟିବାକୁ ଚେଷ୍ଟା କରେଁ ବେଗେ !
ଲୁଟିତ ନଯାରେ କଣ୍ଟ ! ଅବୁଝା କି ଶର ହେବ ସତେ !
ମଳୟରେ କୁହୁଣି ରଚନା !
ସୌରଭ ସଂଗ୍ରହେ ଖାଲି ଉକ୍ତ ଭାର ଅଭିଶାପ ଦିନା !
କୁହୁଡ଼ରେ ଗୁଳାନ୍ତ ପହିଁର,
ବନରେ ସାତର ସ୍ପର୍ଶ—ବନ୍ଧନ, ବା ମିଳି କାହିଁ ମନ ।
ମନ ଗଲେ କେ ନେବ ସନ୍ଧାନ ?
ଭାଦର ଜନ ଦେହ ଥରେ, ହା ହା କାରେ ଦିବ ସିନା ପ୍ରାଣ !
ଛଦ୍ମବେଶୀ, ହସ ଅଗୋ ଥରେ—
ସେ ହସେ କୁହୁଡ଼ି ମରୁ—ମରେଁ ମୁହିଁ ତୁମର ଅନ୍ତରେ ।
କାହିଁ ତୁମ ଉଷ୍ମ ଚୁମ୍ବନ ?
କାହିଁ ତୁମ ତୀବ୍ର ତାପ, କାହିଁ ତୁମ ଗ୍ଲାନର କଂପନ ?
ହୁଅ ମୋର, ହୁଅ ମୋର ସାଥୀ,
ହୃଦୟର ବ୍ୟଥା ବୁଝ, ବୁଝ ତୁମେ ଜୀବନ ଅଭାବ ।

—○—

## ହେ ବାଳିକା, କହୁ ମର୍ମ କଥା—

କନ୍ଦର୍ପର ଶ୍ରମିକ ବାଳିକା,
ସେମାଙ୍କର ନ ଧର କଳିକା !
କାପୁରୁଷକେ ନାଚ ଉଠେ ମନ ?
କାଳିଗି ସେ ପୁଲକ ପାବଣ ?
କହ କହ ଶିଷ୍ୟୁଣୀ ମୋର ,
ବସନ୍ତ ପ୍ରଭାତେ ଲୁଠି, ହୃଦୟର ଏ ପ୍ଲାବନ ଘୋର ।
କାହାରେ ଗୋ ତୁମେ ଭଲ ପାଅ ?
ଭଲ ପାଅ ଯଦି ତୁମେ, କି ନଦଇ ଗୋ ତୁମେ ଭଲ ପାଅ ?
ଲୁଚ ଥରେ, ଥରୁଛି ଅଧର,
ତୁମ ପର ହୁଏ କି ମୁଖର,
ଶେଷ ରବି ସମ ମୁଁ ନୀରବ,
ନାହିଁ ମୁଖେ ପକ୍ଷୀ କଳରବ,
ନାହିଁ ଅବା ନର୍ତ୍ତର ଉଚ୍ଛ୍ୱାସ,
କଣ୍ଠଗତେ ରହେ ମୂର୍ଚ୍ଛା, ବ୍ୟଥା, ଖାଲି ବେଦନା ପରାସ ।
ଏ ଲୁଚର ଗମ୍ଭୀର କଂପନେ
ଅଖି କୋଣେ ଲୁହ ଜମେ—ନ ପଡ଼େ ସେ କାହାର ନୟନେ,
ସେହି ଲୁହ ସମ୍ଭାର କେବଳ,
ସେହି ଲୁହ ଏକୋଇ ସମ୍ବଳ,
ସେହି ଲୁହେ ହସିତ ଜୀବନ,
ସେହି ଲୁହେ ବାଟେ ଅନୁକ୍ଷଣ,
ସେହି ଲୁହେ ନ ଆସିବେ ପାଶେ,
ନ ଆସିବେ ବନ୍ଧୁ ମୋର ? ଅବା ଦେବେ ଭରି ଦୀର୍ଘଶ୍ୱାସେ !

କହ କହ ତୁମି କି ବାଳିକା,

କି ଖୋଜ ଗୋ ଭଲ ପାଅ ? କିଆ କିଛି ଅଛି ସୌନ୍ଦର୍ଯ୍ୟ ।

ବଧୂ ଗଲେଁ ତେଜ ଅଳ୍ପ ଜୀବନେ

ଯାହାଙ୍କୁ ଖୋଜିଛ ପ୍ରାଣ ? ମରଣ ବା ଜୀବନର ସ୍ଥାନେ ?

ବଧୂ ମୋର କି ଦେଖିଲ କିଛି ?

କହ କହି, ଯାଏଁ ଏଠେ କେଉଁଠି—

ଛାତ ଚଢ଼ି ପଡ଼ିଲି ମୁଁ ତଳେ,

ନାହିଁ ଯାହା ନେବାର ଗୋ ବଳେ,

ନାଅ, ଯାହା ତୁମେ ଅଶ୍ରୁ କର,

ରକ୍ତ ନେବ ଗୋ ଯଦି ନେଇ ମାଂସ ଅନ୍ତରେ ତୁମର ।

ହାଡ଼, ମାଂସ, ଯାହା ଅବା ଗୁହାଁ

ନାଅ ତୁମେ ମନ ଭରି,--ମାତ୍ର ଚିତେ ସଜଲେ ଅନାଅ,

ଯାହା ଗୁହାଁ ନ ପାଇବ ଯଦି

ଉପର ପାଇବ ତଥ୍ୟ—ବଣ୍ଟର ଏ ଲକ୍ଷ ପୁଷ୍ପ ବେଦୀ !

ବସ୍ତ୍ର ତୁମ ଅନ୍ତି ଚର୍ମ ଅଂଗେ

ତୁମର ଅନ୍ତରେ ଖେଳେ ସତ୍ୟ, ଶିବ, ସୁନ୍ଦର ଗୋ ରଂଗେ,

ହେ ବାଳିକା, କହ ମର୍ମ କଥା,

ଜୀବନ ଉପର ଏହି ହୃଦୟର ମର୍ମନ୍ତୁଦ ବ୍ୟଥା !

—o—

# କ୍ଳାନ୍ତ ପଥିକ

ଝିଲ୍ଲୀର ସ୍ବନନାଚ୍ଛନ୍ନ ଲଭନ୍ତି ଏଥ ବନ
ଜୀବନ ପ୍ରଭାତର ମୋର, ଶୁଣିଲି ଯେସନ
ମୁଗ୍ଧାର ନିବିଡ଼ ପ୍ରେମ ; ସ୍ପୃହାର ଫଳେଚ
ଦୁଃଖର ସେହ୍ନଦନ ପରିଚ୍ଛନ୍ନ-ସ୍ରୋତ
ଏହିଁ ମମ, ଦେଖାଇଲା ଝଙ୍କାର ଅବ୍ଧୁଣି;
ସେହ୍ନଦନ୍ତି ନିବଟାର ପରଣ କରୁଣି
ଆଯସର ନିଶାନ୍ତର ମ୍ଳାନରୂପ ସମ
ଦେଖାଇଲ ଜ୍ୟୋତିପଣ୍ଡ ସମ ଓ ଶରମ;
ସେହ୍ନଦନ୍ତି ଲଭନାହିଁ କେବେ ପରିନସ୍ତ,
ତମିର ଗର୍ଭରେ କେବେ ହୋଇ ନା ଉଦିତ
ପଡ଼ିଲେ ବି ବାରମ୍ବାର; ଉଦ୍ବାସ୍ୟର ତାଳ
ସ୍ୱର୍ଗର ସଙ୍ଗୀତ ସମ କହିଣ ଅବାଳ ।
ଧୂଳିଭରା ବସ୍ତ୍ରାଧାରେ ଅଲଙ୍କା ଯେପରି
ସ୍ତ୍ରୀଙ୍କର ଇଙ୍ଗିତ ଲଭି, ହୃଦୟରେ ଭରି
ସ୍ନିଗ୍ଧ ଅଶ୍ରୁସନାଥର ନାମ ଗାଇ ଗାନ,
ହସି ଉଠେ, ଯାଚିଣ ମୁଁ କଷ୍ଟପର ଦାନ ।
ଅକାଙ୍କ୍ଷାର ଶେଷ ନାହିଁ, ନବ ପୁଷ୍ପଦଳେ
ପୁଷ୍ପପରେ ପୁଷ୍ପ ଫୁଟେ, ଲହଣୀ—ଅତଳେ
ସୌରଭ ବିଚ୍ଛେଦ ହୁଏ ନାରେ । ହେ କ୍ଳାନ୍ତ ପଥିକ,
କ୍ଳାନ୍ତ କିଂବା ? ମ୍ଳାନ କିଂବା ନହୋଇ ନିର୍ଜୀବ,
ନହୋଇ ଜୀବନ ଭୁଲେ ତାହା ସ୍ୱୋଚ୍ଚ ସମ୍ମାନ,
କାଇଁକି ମଣୁଛନି ବିଷ ? କିଂବା ଅଭିମାନ ?

କାମନାପ୍ରୀତ ଦାସ ଏହୁ ବିକ୍ରୀତଭପମାନ ?
ନିଜରେ ଦେଉଛ ନିଜ ନିଜେ ଅପମାନ !
ଚେଣସ୍ତ ମୁଁ; ଅସ୍ତ ସଙ୍ଗେ ;ନାହିଁ ପରାଜୟ;
ମୋ ପାଖରେ ନାହିଁ ବଳ, ପ୍ରେରଣାର ଭୟ ।

—୦—

## ଟ୍ରାଜେଡି

ମଦ୍ୟର ଅମୋଦ ଭରା ଛନ୍ଦ ଭରା ରଜନୀ ଝୁଡକା
ନୀରବ ନୂପୁର ତାଳେ ପ୍ରାଚୀନଟେ ଯେବେ ଗୁଳେ ପାଦ,
ସାଙ୍ଗ ଲଭେ କୋଳାହଳ, ପଣ୍ଡିତରେ 'ବିରହ' ଭୂମିକା
ବାଡି ଯେବେ ଦାନଦେବୀ ରୂପମୟୀ ଲଭେ ଅବସାଦ,
ଲଭେ ଯେବେ ଅବସାଦ ଅନ୍ଧ ଦୋର 'ଅଭିଦୋ'ର ରୂପେ,
ଭୁଲଲ ଯେବେ—କେ ଲାଗିଲ 'ନୀରବ'ର ପାଇବ ମୁର୍ଚ୍ଛନା,
ଭୁଲେ ଯେବେ—ଭୁଲଲଭେ ଗୋଟୁଲର ଚନ୍ଦ୍ର ତାଂର ଧୂପେ,
ବ୍ରନେକାଲ ବ୍ରରେ ଯଦ, ଚନ୍ଦ୍ରଅଣେ କେବଳ ଯାତନା;
ଜୀବନରେ ଜନ୍ମ ଦେଖି, ଜାଣି ପୁଣି ନିଶ୍ଚିତ ମରଣ,
ଜୀବନର ମଦ୍ୟ,ଛନ୍ଦ, ମରଣର ଛବିଳ ତୋରଣେ
ମଣିଷ ନ ଦେଖେ ଯେବେ, ଲଭେ ଯଦି ହୃଦୟେ କପଟ,
ଯା'ପାଇଁ ତା'ପୁଁ ପ୍ରେମ ଯଦେକୁଳା ରୂପସୀ ପ୍ରାଙ୍ଗଣେ
ମଣିଷ ନ ଦେଖେ ଯେବେ;
ସେହି ଏକା ଟ୍ରାଜେଡି ନିର୍ମଳ—
ଆସିବା ଓ ଯିବା ଏକ; ସତ୍ୟ ଅବା ମିଥ୍ୟା ଉପଲବ୍ଧି
ଟ୍ରାଜେଡିର ତରେ ସୃଷ୍ଟି—ଜନ୍ମ ପର ମରଣ ବିମଳ,
ସୁନ୍ଦର ଗୋଟୁଲି ଯଥା ରୂପଜଟା ସମ ନିରବଧି ।

# ବିଦ୍ରୋହ

ବିଦ୍ରୋହୀ ମୁଁ……
ତୁମର ଚରଣରେ ମୁହିଁ କରେଅଛି ବିଦ୍ରୋହ ଘୋଷଣା—
ତୁମଲାଗି ଭଲପାଏଁ ଜୀବନର ଦୈନ୍ୟ ଓ ଯାତନା ।
ପୁଣି ଘୋଷେ ବଜାଇ ଦୁନ୍ଦୁଭି—
ବିଦ୍ରୋହର ସୃଷ୍ଟିକର୍ତ୍ତା ନ ଜାଣେ ଯେ, ସୁଧା ଓ ସୁରଭି
ନ ଜାଣେ ସେ ଏହି ଜୀବନର—
ବିଦ୍ରୋହେ ଅଜୀତ ମନେ ଅଧିମୂଚନ ହୋଇ ଜର ଜର ।
ଈର୍ଷା, ବୈର, ଦ୍ୱେଷ, ଭୟ ତୁମଠାରେ ନାହିଁ ବିଦ୍ରୋହୀର—
ଅଗ୍ରେଣୁ ପର୍ବତ ସମ ଅତି ସ୍ଥିର, ପୁଣି ଅତି ଧୀର
ନିଶାନ୍ତର ପଦ୍ମ ପୁଷ୍ପ ସମ—
ତୁମଙ୍କୁ ପାଇବ ବୋଲି ହୃଦୟରେ ନିହିତ ମୁଁ ପ୍ରେମ—
ତୁମଙ୍କୁ ମୁଁ ଭଲପାଏଁ ଅତି,
ମୋ ଦାବୀ ବୁଝିବ ତୁମେ—ତୁମେ ପୁଣି ବୁଝିବ ମୋ ମତି ।
ସନ୍ଧିରେ ବିଦ୍ରୋହ ଜନ୍ମ ଅଂଶୁଧର ଯଥା ହୁଏ ଲୀନ
ସନ୍ଧିଭୂତ ଗୋଧୂଳି ଅନ୍ତରେ,
ତୁମରେ ବିଦ୍ରୋହ କରେ ସେହିପରି ତୁମର ଅନ୍ତରେ
ମିଶିବାକୁ ଅତି ଆଗ୍ରହରେ ।
ବିଦ୍ରୋହର ରଙ୍ଗଭୂମି ଫୁଟିଗଲେ ମାତରନ୍ତେ ନାଥ
ତୁମଙ୍କୁ ପାଇବାପାଇଁ ସେହି ସଙ୍ଗେ ଧନ ଯାଉ ବାତ ।

—୦—

# ସୃଷ୍ଟିରେ ପୃଥିବୀ ମୂଲ୍ୟ

ବସନ୍ତର ଏ ରୂପ ଦେଖିଲେ
    ଇଚ୍ଛା ହୁଏ ମରିଯାନ୍ତି ପଡ଼ି ମୃତ୍ୟୁ ନାଗର ଅଙ୍କରେ !
କିନ୍ତୁ କାହିଁ, କାହିଁ ସେ ମରଣ ?
    ବସିଲେ ବେଦନା ଜାଗେ, ହୃଦୟଟା ଥରେ ଅନୁକ୍ଷଣ ।
ଇଚ୍ଛା ହୁଏ, କୁହୁକିନୀ କେହି ଜଣେ ଅଜ୍ଞାତ ସୁନ୍ଦରୀ
ଅଙ୍କରେ ବେଢାନ୍ତା, ମୋର କୁହୁକରେ ଭରି ଦା ଉଦ୍ରସି,
ଇନ୍ଦ୍ରିୟର ଅଗୋଚରେ ମୁହିଁ ଯାନ୍ତି ଅତୀନ୍ଦ୍ରିୟ ପୁରେ,
ହୋଇଯାନ୍ତି ଚିନ୍ତାହୀନ, ବ୍ୟଥାହୀନ ଦୂରେ ଅତି ଦୂରେ,
ହୋଇଯାନ୍ତା ଛଳନାର ସାଥେ ମୋର ମଣିଷ ସଂସାର,
ଏକାଳେ କୁହୁକବଶୀ ନବପ୍ରାଣ କରନ୍ତା ସଂଗ୍ରହ ।
ମରନ୍ତା ଭାରତ ଚୀନ, ମରଯା'ନ୍ତେ ରୁଷ୍ ଆମେରିକା,
ମରନ୍ତା ଇଂଲଣ୍ଡ ତୁର୍କି, ନ ରହନ୍ତା ଦେଶର ଭୂମିକା,
ନ ରହନ୍ତା ଜାତୀୟତା, ନ ରହନ୍ତା ପୂର୍ବ ଓ ପଶ୍ଚିମ,
ଜାତି ଦେଶ ସ୍ୱାର୍ଥଲାଗି ନ ବାଜନ୍ତା ଯୁଦ୍ଧର ଡିଣ୍ଡିମ,
ମରିଯାନ୍ତା ଖ୍ରୀଷ୍ଟିୟାନ୍, ମରିଯାନ୍ତା ହିନ୍ଦୁ ମୁସଲମାନ୍,
ନ ରହନ୍ତା ବୌଦ୍ଧ ଶିଖ୍, ତୁଟିଯାନ୍ତା ଧର୍ମ ଅଭିମାନ,
'ପୃଥିବୀ ବାସିନ୍ଦା ମୁହିଁ', 'ଆନ ନୁହେଁ ମୁଁ ମଣିଷ ଜାତି',
ଏ ହୁଅନ୍ତା ପରିଚୟ ,— ଉଲ୍ଲସିତ ହୁଅନ୍ତା ମୋ ଛାତି;
ଯେ କାଳେ ଆସନ୍ତି ସେହି ମୋର ଏହି ମିଶ୍ର ପୃଥିବୀରେ,
ଜାଗନ୍ତି ଇନ୍ଦ୍ରିୟ ଶକ୍ତି, ଅନୁଭବ ଗୁପ୍ତ ଧମନୀରେ,
ମଣିଷର ଯନ୍ତ୍ରା [illegible]ଳି, ମଣିଷର ଗର୍ବ ଧରି ବୁକେ
ଏ ସୃଷ୍ଟିର ରଂଧ୍ରେ ରଂଧ୍ରେ ଭ୍ରମନ୍ତି ମୁଁ ଉତ୍ପଲ୍ଲେ ଉତ୍ସୁକେ;

ଆଜି ଯେ ବସନ୍ତ ଅସେ ମଣିଷର ବ୍ୟଥା ନେଇ ପାଶେ,
ଉଚ୍ଛ୍ୱାସ କରନ୍ତା ପ୍ରାଣ ତେବେ ତା'ର ସୁରଭି ନିଶ୍ୱାସେ;
ମଣିଷର ଅଭ୍ୟାଗ୍ରେ ମଣିଷର ତପ୍ତ ଅଶ୍ରୁଧାର
ନିର୍ଝରର ନିଦ୍ରା ଭଙ୍ଗ କରନ୍ତା କି ହୃଦୟ ଅଧୀର;
ଆଜି ଯେ ମଣିଷ ଭୋଗେ ପୃଥିବୀରେ ନରକ ଯନ୍ତ୍ରଣା
ଯେଉଁ କାଳେ ବୁଝନ୍ତା ସେହି ପୃଥିବୀରେ ପୃଥିବୀ ବେଦନା;
ଅନୁଭବ କରନ୍ତା ମଣିଷ—
ସୃଷ୍ଟିରେ ପୃଥିବୀ ମୂଲ୍ୟ, ଅଛୁ ତହିଁ ସୁଧା ଅବା ବିଷ ।

—୦—

## ନଈ

ନଈ ବହେ ସାପେଇ ସାପେଇ
କୂଳ କୂଳେ ଦୋହାଉଣ୍ଡ ଦେଇ ।
ଗଡ଼ିଗଲେ ସମୟର ଧାର,
ନିରମଳ ପାଣି କାଚଧାର ।
ଢେଉ ପରେ ଢେଉ ପିଠେ ଦୋହି,
ତରଙ୍ଗରେ ମରମର କୋହ,
ରୂପ, ଶାନ୍ତି ରୂପର ବଜାର,
ନିରମଳ ପାଣି କାଚଧାର ।
ନଉକାରେ ବସି ଗୁଲେ ଭାସି,
ଲୁଚିଯାଏ ରୂପ ରଶ୍ମି ରଶ୍ମି;
ଭାସିଗଲେ ସମୟେ ଜୀବନ,
ଗଢ଼ିଯାଏ ରୂପ ଅଗଣନ ।

ନଈତଟୀ ରେ ଭୁଲୁଛି ନଈତଟୀ,
ପାହିଆରେ ଗୁହେଁ ମୁହିଁ ବୋକା;
ସାଙ୍ଗ ସାଥୀ କରନ୍ତି ମେଳାପ,
ମୁହିଁ କିଂତୁ ଲଭେ ଅଭିଶାପ ।

ନିଜରେ ମୁଁ ଭୁଲି ଦେଖେଁ ସ୍ୱପ୍ନ,
ସ୍ୱପ୍ନ ସଦା ଭରେ ନାହିଁ ନାହିଁ;
ଯାହା ଦେଖେଁ ହାଡ଼େ ହାଡ଼େ ଡରେ,
ଜୀବନରେ ଆଉ ନାଉ ମରେ ।

ନିଜରେ ମୁଁ ଭଜ ନାହିଁ ପାଏଁ
ନିଜକୁ ମୁଁ ଭୁଲି ଯାଇ ଥାଏଁ,
ସ୍ୱପ୍ନଟାକୁ ଦେଖି ଦେଖି ଥରେ—
ଅଳିଛରେ ଝୁରି ଝୁରି ଝରେ ।

ସ୍ୱପ୍ନ ହୁଏ ଖଣ୍ଡବିଖଣ୍ଡିତ—
ଜାଲ୍ ଜାଲ୍ କେବେ ନମିଳିତ—
ଜୀବନକୁ ଭଲପାଏ ନାହିଁ,
ବୋକା ମୋଠୁଁ ଦୁନିଅରେ କାହିଁ ?

ଅଜ କିଂତୁ ଫେରୁଛି, ଫେରୁଛି;
ସ୍ୱପ୍ନ ମୋହ ଭୁଲୁଛି, ଭୁଲୁଛି;
ଦେଖେଁ ଅଜ ପାଣି, ଖାଲି ପାଣି
ବଢ଼ିଯାଏ ଭରି କେତେ ଠାଣି ।

ଆକାଶରୁ ଝରୁଛି କିରଣ
ଝରେ ସାଥେ ମଦୁଆ ସପନ,
ଆକାଶରୁ ଝରୁଛି ଶୀକର,
ଯଉବନ ଝରେ ଝର ଝର ।

ଜୀବନକୁ ଭଲପାଇଲଣି,
ମରଣକୁ ଭେଟି ଶିଖିଲଣି ;
ଫକ୍କଡ଼ତା କେବଳ ଶିଖିଛୁ,
ବଣନହିବା ଭାଗ୍ୟକୁ ଭୁଲିଛୁ ।

ସୁଅ ସହେ ନଉକାର ଭାର—
ସୁଅତଳେ କାଉ ଧଏଁ ଢେଉ—
ସୁଅ ଗାଏ ଗୁଲଚାର ଗୀତ—
ନଉକାରେ ଢଳେ ଜନମତ ।

ସୁଅଲାଗି ଗଢ଼େ ଲକ୍ଷ ପୁଲ
ସୁଅଲାଗି ସୁନା ଦୁଇ କୂଳ,
ସୁଅ ଲାଗି 'ନୂଆ' ଅଭିସାର,—
ଝଂକାରିତ ହୃଦୟର ତାର ।

ସୁଅ ଟାଣି ଭେଟାଏ ଉଜାଣି,
ହୃଦୟର ସ୍ନେହ ସବୁ ଉଦ୍ଧ ।

ପାରିଛୁଏଁ ସବୁ ନିଷ୍ପଦେ,
କାରଣ ମୁଁ ଜୀବନର ପଦେ
ଲୁହ ଲହୁ ସବୁ ଦଏଁ ଢାଳି,
ଜୀବନର ମୁଁ ପ୍ରିୟସଙ୍ଗାଳି ।

ନଈ ବହେ ସାଟପଇ ସାଟେପଇ,
ଦୁଇ କୂଳେ ଦେହଭରା ଦେଇ,
ଗଢ଼ି ଗୁଳେ ସମୟର ଧାର,
ନିରମଳ ପାଣି ବାଟଧାର ।

—୦—

# ଚାତକ

ଶୁଣ ଗୋ ଗୋଟିଏ ଚାତକର କଥା । ଆକାଶର ନୀଳ ତଳ
ନିତି ଯାଏ ମେଘ ବିଜୁଳି ଖୋଜେ । ଅଲୋକ ଦେଶର ଶିଶୁ,
ବରଷା, ବିଜୁଳି, ମଳୟ, କାକର ବେଢି ରହେ ଦେହ ତା'ର,
ବେଢି ରହେ ଯଥା ମଣିଷ ଜୀବନେ ପ୍ରଳୟ ମଳୟ ଡୋର ।
ବଡ଼ ଜିଦଖୋର୍ । କବିର କବିତା । ପ୍ରେମିକର ଦୂର ପ୍ରିୟା ।
ବିଜ୍ଞାନର ବନ୍ଦୀ । ରୂପପାପୀ ଶିଳ୍ପୀ । ସଇନିକ-ବୀର-ହିଆ ।

ଗୋଧୂଳି ସମୟେ ଦିନେ—

ଫେରୁଥିଲା ଦୂର ମେଘ ଖୋଜାରୁ । ଉଡ଼ିବାର ଗୀତ ତାନେ
ଡେଣା ବେନି ବାହୁ ଝଲକଣା ଭଙ୍ଗା ବାୟୁମଣ୍ଡଳର ସ୍ତରେ
ତେଜ ଭରି କେତେ ଆସୁଥିଲା ଉଡ଼ି ପୃଥିବୀର ପ୍ରିୟ ଘରେ

ଏକାଳେ ଉଇଁଲା ଜହ୍ନ

ଆକାଶ ଅବନୀ ତରସି ଉଠିଲା, ବହିଲା ସୁଧାର ବନୀ ।
ଥମି ଗଲା ଗତି, ଥମି ଗଲା ଛନ୍ଦ,—ନ ପାରିଲା ଆଉ ଭାସି—
ଥମିଯାଏ ଯଥା କଳପନା ବେଗେ କବିର କବିତା ରାଶି ।
ସୁଧା ପାଇ ତା'ର ମନ ଉଚ୍ଛୁଳିଲା, ଆଖିରେ ଆସିଲା ପାଣି—
ଯହିଁ ଝରେ ସୁଧା ସେ ଦେଶର କଥା ନ ପାରିବ କିଏ ଜାଣି !
ଘରର ମମତା, ପିଲାର ମମତା, ସୁଖେ ଶୋଇବାର ମୋହ
ଲୁଟାଇ ଦେଲା ସେ ଆବେଗ ଯହିଁରେ ନାହିଁତ ମରମ କୋହ ।
ମଳୟ ଖୋଜେ କୋଇଲି ଯେପରି ଉଡ଼ିଯାଏ, ଭାସିଯାଏ,
ଗୀତ ଝରଣାରେ ଭାସି ବୁଡ଼ି ସେ ତ' ଗଢ଼ିଯାଏ, ବହିଯାଏ,
ରୂପର ଝରଣା ଆଜି ସେହିପରି ଗଡ଼ିଚାଲେ ଗଡ଼ିଚାଲେ,
କର୍ପୂର ମାଟିରେ ଗୋଳି ହୋଇ ପାଣି ଅଳସରେ ଖେଳିଚାଲେ-

ଉଜାଣି ଚାଲିଛି ଚାତକ ଚଢ଼େଇ ଦେଖିବ ରୂପାର ଦେଶ ।
ରୂପ ପାଇଁ ଆଜି ପ୍ରାଣ ଆକୁଳିତ । ରୂପ ପାଇଁ ଏଇ ଦେଶ ।

ଉଡ଼ି ଚାଲେ ଦୂରେ...ଦୂରେ...

ମେଘର କୁହୁଡ଼ି ଛୁଇଁ ମଥା ତା'ର ଧୂଆଁଳିଆ ମେଘପୁରେ...
ଭୁଲି ଜୀବନର ଜ୍ୱାଳା

ନିଜର ବାରତା କହେ ଉଲ୍ଲସିତେ । ଉଲ୍ଲସିତ ବାହୁ ଜାଳା—
ଦେଖି ତାକୁ ସବେ କହନ୍ତି "ହଇହେ, ଉଡ଼ିବ ସାହସ ଟିକେ ?
ଟିକି ପ୍ରାଣ ତୁମ ଏତେ ବଡ଼ ପାଇଁ ଦେଉଛ ନିଜରେ ଶକ୍ତି !"
"ଅଛି ତ' ସାହସ ! ସାରା ଜୀବନକୁ ଟିକିଏ ଉଦାସ କରି
ମୋହି ପାରେ ଯଦି, ବନ୍ଧୁଏ ମାତର ନ ପାରନ୍ତି ଭରି ଧନ ?"

ଉଡ଼ିଚାଲେ ଦେଇ ମେଲି...
ଗତମାନ୍-ଗୀତ ତାଳି...

ଆସିଲା ଝଞ୍ଜାଳ, ଆସିଲା ଅଶନି, ଆସିଲା ବରଫ ସ୍ତୂପ...
ଯୋଜନା ତୁଟିଲା । ତିମିର ଘୋଟିଲା । ଚାତକ ଲଭିଲା ମୋକ୍ଷ ।
ଯନେଇ ଗଲା ତା' ସରବ ଆକାଙ୍କ୍ଷା ପ୍ରଳୟେ କବଳା ହୋଇ,
ଯୋଜନା ଦେଶର ଦୂତକା ବୋଲି ଏ ପ୍ରଳୟକୁ ନେଇ ଧରି
ଉଡ଼ିଲା ଚାତକ । ଜୁଡ଼ୁବୁଡ଼ୁ ଦେହ । ଆଘାତରେ ରମ ପିନ୍ଧେ—
ତଥାପି ସପନ ଦେଶର ଲୋଭରେ ମନ ପ୍ରାଣ ତା'ର ଭରେ ।

ନ ପାରିଲା ଆଉ ଚଳି...
ମରଣରେ ପଡ଼େ ଢଳି—

ଘୂରି ଘୂରି କେତେ ଆଗକୁ ପଛକୁ ପଡ଼ିଲା ଧରଣୀ ପରେ—
ଛୁଟି ଛୁଟି ତା'ର ଜୀବନ ହେଉଛି । ତଥାପି ତା'ମନ ଉଡ଼େ—

ଇଚ୍ଛା ସେତ୍ତ ଏକ । ଅମୃତ ସପନ, ଅମୃତ ଦେଶର କଥା—
ଦେହ ମରଣର 'ଅକାଂକ୍ଷା' ଅନ୍ତରେ ସେ କନ୍ତୁ ନ ନଏଁ ମଥା ।
ଶୁଭଙ୍କ ପଢ଼ିବ ପଥେ—
ଚଲ ବାଟୋଇର ଚିତ୍ତେ—
ଅଙ୍କ କହେ ଏକ କଥା...
"ଦେହ ମରୁ ତୋର । ଅକାଂକ୍ଷା ନ ମରୁ ।
ଟେକି ଗୁଲ ସଦା ମଥା ।"

—୦—

## ମଦିରା ଓ ପ୍ରକୃତି

ପୂର୍ବ ଦିଗ ଚକ୍ରବାଳେ ତେବେ
ରକତ ଗୋଲାପ ଏକ ଫୁଟିଥାଏ—
ସ୍ୱପ୍ନେ ଯାହା ଦେଖି ନାହିଁ କେବେ ।
ବାଗା ବସି ଡ଼ାକଇ—"ମଦର !
ମୁଁ ଯାଏଁ ଶାଢ଼ୀଠା ନେଇ । ରହ ତୁହ ।
ଦେଖୁଥିବୁ ଘରେ ଲୁଆପିଲା ।
ବଉ ତୋର ଯିବ ବାପ ଘରେ ।"
ମଦର ନ କହେ କିଛୁ । ଗର ଗର,
ଜର ଜର—ଅଶାନ୍ତିର ଜରେ ।
କହୁଥାନ୍ତି ସାଥୀଏ ତାହାର—
"ଚାଲ ଯିବା ବେଡ ବଣେ । ମଦଭଲେ,
ସହଲେ ତୁ ହୋଇବୁ ବାହାର ।"

ଝରିଯାଏ ଆଶା, ମରେ ମନ—
ଛନ୍ଦୋହେ ମନଟା ନାଚେ ; ପ୍ରାଣ ଥରେ
ଗୁଣୁ ଗୁଣୁ ଉଠେ ଓଠ କୋଣ ।

ଅଜା ଏକ ଲଗ୍ନେ ସ୍ୱେଦ୍ରଫଟ
ମେଘର ଅଶାଟା ମରେ । ଗୃଳିଯାଏ ମାର୍ଜା ଅବ ଅବ ।

ଅସିଥିଲା ଧରି ଭଲା ଭାନ୍ତ—
କିଂତୁ ଝେ ଦେଲ ରେ ବାଧା ! ଫାଟିଯାଏ ସ୍ଥତ, ତୁଟେ ଶାନ୍ତ !
ହୋଇଯାଏ ରୂପଟା ମଳାନ—
ଗୁଞ୍ଜୁ ଗୁଞ୍ଜୁ ଧ୍ୱନି କରି, ଦୂରେ ଦୂରେ ହୋଇଯାଏ ଲୀନ ।
ଅସିବାର ବଜ୍ରଲ ଟଳସ
ମନ୍ଦରର ହସ ପରି । କିଂତୁ କାହିଁ ଉଡ଼ିଯାଏ ହସ !
ମନର ପ୍ରକୃତି ଏକ । ପ୍ରକୃତିରେ ମନର ବିକାଶ ।
ମନରାଜ ଅଂଗେ, ପ୍ରାଣେ ପ୍ରକୃତିର ବଚିତ ବିନ୍ୟାସ ।

— ০ —

## ସ୍ରଷ୍ଟା

ଶିଳ୍ପୀ ଭଣେ—
"ମଣିଷ ରେ, ଜାଣୁ କି ତୁ କିଏ ମୁହିଁ ତୋର ?
ବାନ୍ଧିଛି ତୋତେ ଓ ମୋତେ
ପୀରତିର କି ନିବିଡ଼ ଡୋର ?
ତୋ ଛବିର ରୂପରେଖ
ପଢୁଅଛୁ କେତେ ମୋ ରଚନା—

ପ୍ରିୟା ସାଥେ ଥାଇ ବି ମୁଁ
ଅନୁଭବ ନାହିଁ ତା' ଧମନୀ ।"
ଶିଳ୍ପୀ ନେଲେ ଟାଣି କୋଳେ
ସେ ସୁଷମ ଗ୍ରୀବଟାରେ ଭିଡ଼ି
ଅଙ୍କିଲେ ଚୁମ୍ବନ ଗାଲେ
ପ୍ରାଣ ମୋର ହେଲା ଶିବ ଶିବ ।
ମରିଗଲି ସ୍ରଷ୍ଟାର ଅନ୍ତରେ ।
ଅଜି ସେ ଲଗ୍ନର କୋହ ଶିଳ୍ପୀ ମୋର ପ୍ରାଣେ ପ୍ରାଣେ ଭରେ

( ଅସମାପ୍ତ )

# ଅଭିସାର

ଫୁଟିଥିଲେ ଅକାଶରେ
ଶହ ଶହ ତରା
ଦେଓ୍ୱାଲୀର ଲକ୍ଷ ଦୀପ ପରି,
ପାଲଟା ଉପରେ ଶୋଇ
ଟେକା ଅଖି ମୋର
ନିବଡ଼େ ମୁଁ ଦେଖୁଥିଲି ଭର ।
ବସ୍ଠ ସୃଷ୍ଟ ଟା ତେବେ
ଧୋଇଗଲା ସ୍ରୋତ—
ସ୍ରୋତ ଯଥା ମୋର ଦେହ ଗୋଟି

ଆବରଣ ଖୋଲି ମୋର
ପୁଲକିତେ ମୁହିଁ
ହୃଦୟରେ ତା'ର ଗନ୍ଧ ନେଇଛି ।
ଦୁଇଟି ରହିଲି ଜଡ଼ି
ଆଖି ଲୁହେ ଧୋଇ
ବେଦନାଙ୍କର ଥର ଥର ଗୀତ,
ବିପୁଳ ଉର୍ମିର କୋଳେ
ବୃନ୍ତ ଲତା ଯଥା
ନୀରବେ ଓ ସୁଖେ ଯାନ୍ତି ମାତି ।

— ୦ —

## କବିର ମିନତି

ନୀଳ ସେ ଆକାଶ କାହିଁ ? କାହିଁ ତା'ର ନକ୍ଷତ୍ର ବିଭବ ?
କାହିଁ ତା'ର ମେଘ ଚଳଚଳ ?
କାହିଁ ଚନ୍ଦ୍ର, କାହିଁ ବା' ଜୋଛନା
କାହିଁ ସୂର୍ଯ୍ୟ, କାହିଁ ତା' କିରଣ ?
କାହିଁ, ଏ ସୃଷ୍ଟିଟା କାହିଁ ? କାହିଁ ସ୍ରଷ୍ଟା, ବିରାଟ ଜୀବନ ?
ନାହିଁ ସ୍ପର୍ଶ, ଅଛି ଅନୁଭବ···
ମରନ୍ତୁ ସ୍ରଷ୍ଟା ମୋ ହୃଦେ—ତହିଁ ପୁଣି ସୃଷ୍ଟି ସମ୍ଭବ ।
ବିରାଟ ଯେ ଅତି କ୍ଷୁଦ୍ର ତହିଁ,
ମରଣ-ବିଗୌରବ ଖାଲି ବନ୍ଧନ୍ତାର କୋହ ଥାଏ ଯହିଁ ।
ପୁଣି ଘନ ଜ୍ୟୋତ୍ସ୍ନାର ଉତ୍ସବେ,
ବୈଶାଖର ପ୍ରଳୟ ତାଣ୍ଡବେ,

ଶ୍ରାବଣର ସ୍ୱପ୍ନମୟୀ ଝରେ,
ହେମନ୍ତର ହଳଦୀ ଗରବେ,
ମଳୟର ନରମ ହିଲ୍ଲୋଳେ,
କଛେ ମୁହିଁ ଗୃଲ୍‌ଯାଏଁ ଚାହିଁ ?
ମହତ ଏଁ ସ୍ୱଗତ୍ତିନେ ଭିନ୍ନି ଯହୁଁ ବାଟ ବାଧା ମୋତେ ନାହିଁ ।
ସେଛୁପରେ ମହୋଏଁ ପୁଣି
ସଂସାରର ହୃଦୟେ ହୃଦୟେ
ପ୍ରକୃତ ମଣିଷ ଏକ—ଏଣୁ ଯାଏଁ ତାହୁଁ ମୁଁ ନିର୍ଭୟେ ।
ସୃଷ୍ଟି ପର କନ୍ତୁ ଏ ମଣିଷ
ନ ମରେ ମୋ ପ୍ରାଣେ ଥରେ—ଯେପରି କ ତାହାରେ ମୁଁ ଝପ !
ହେ ମଣିଷ, ଅସ ମୋ ଅନ୍ତରେ,
ତୁମପିଂ ଅସ୍ତନ ଅଛୁ; ହୁଅ ହେବା ଏକ ଗୋପନରେ ।
ତୁଟିଯିବ ଏ ସବୁ ବିରୋଧ,
ତୁମେ ଦେବ ମୋତେ ପୁଣି ମୁହିଁ ଦେବି ତୁମରେ ପ୍ରବୋଧ !



## ମନ୍ଦିରାର ବାଣୀ

କହିଲ ମନସ୍ ...
ଅଛି ବନ୍ଧୁ, ଶୁଣ ଗୋଟେ କଥା—
ଯଦିଲି କଥାକୁ କିଂଚା ତୁମେ କର ଏତେ ବଡ଼ ମୋଠା ?
ପୃଥିବୀର ଏଇ ମାଟି ପାଣି
ସମାନ ସମାନ ନେଲେ ରହନ୍ତା କି ଦୁଃଖର କାହାଣୀ ?

ଷ୍ଟୋନ୍‌ଟାକୁ ମନ୍ଦସ୍ମ ସେଦିନ
ଦେଖିଥିଲି ଜୀବନେ ପ୍ରଥମ,
ପ୍ରଥମ ଥର ଶୁଣିଥିଲି ତେବେ
ସ୍ତୁତିବାଦରେ ମଣିଷର ଈର୍ଷା ।
ହସିଲି ମୁଁ ...
ସେ ହେଲା ବନ୍ଦି ତ...
ଅଙ୍କ ଛାଂଚୁ ଦିଏ ହସେ...ମୋ ପ୍ରାଣେ ତା' ଛନ୍ଦୁ ଭଙ୍ଗିତ ।



## ବାଘୁଣୀ

ନାଅ ତା' ବାଘୁଣୀ...
ସାନ୍ତାଳୁଣୀ - ଜାତ ଅତ ନୀଚ...
ସାଉଁଲ କଳା ତା' ଦେହ... ଲତାପରି ସରୁ ଓ ସୁନ୍ଦର...
ଯଉବନ ଫୁଟି ଉଠେ ନୂଆ...
ମାଟି ବୋଝ ମୁଣ୍ଡେ ଧରି ହସି ହସି ଗଲେ...
ତୈଳହୀନ କବରୀରେ ଖୋସେ ସଦ୍ୟ ଫୁଲ ।
ରମିଅ, ବନିଅ, ରଘୁ ସାନ୍ତାଳ ଯୁବକ...
ମାଟିବୋଝ ମୁଣ୍ଡେ ଧରି ଗଲେ ଯେବେ ବାଟରେ ବାଘୁଣୀ
ରମିଅ ଜାବୁଡ଼ି ଧରେ ତା ଛିଣ୍ଡା କଳିଜା,
ବାଘୁଣୀ ନ ବନ୍ଧେ ବେଣ୍ଟ,
ହସି ହସି ଯାଏ ନେଇ ବୋଝ;
ପୁଣି ଭେଟେ ବାଟରେ ବନିଅ...
ବନିଅ ଫୁଲଟେ ଖୋସି ବାଘୁଣୀର କାନେ

କେହି କେବେ ଜାଣିପାରେ କଥା,
ବାୟୁାଣୀ ଅଙ୍କେ କଲେ ଭଡ଼ ଧରେ ଗ୍ରାହକୁ କୁଣ୍ଢାଇ;
ଅଜ ଚେଙ୍ଗା ଅସନ୍ତ ସାଥୀକୁ,
ଚୋଙ୍ଗାଏ ଅସନ୍ତ ଗ୍ରାହ ମାଲିକର ଧାମ;
ନାଚନ୍ତୋଲେ କମ୍ପି ଉଠେ ମାଟି —
ବାୟୁାଣୀ ପଚ୍ଛରେ ଧାଏଁ ଗୃଧ୍ରଅ ଚୋଙ୍ଗାଟା।
ଭଡ଼ ଧରି ଛାଣି ଅଣେ ସୃମୃତିଙ୍କ ମେଳେ।
ଅଶିକ୍ଷିତ—ଅତି ନୀଚ ଜାତି···
କିଂତୁ କାହିଁ ଇନ୍ଦ୍ରପୁର ଉତ୍ପାଦ—?
ଇନ୍ଦ୍ରପୁର ବ୍ୟଭିଚାର ?
ନାରୀ ତ’ ପୁରୁଷ ସାଥେ ମିଳିବାକୁ ନ ହୁଏ ଶଙ୍କିତା !
ସମିଅର ‘ବୁକ’ ଖାଇ
ନ ହୁଏ ଗୃଧ୍ରଅ ଅଟେ ବାୟୁାଣୀଟି ନୀଚ, କଳଙ୍କିନୀ।
ଚରିବ ଚରିବ ବୋଲି ସଭ୍ୟତାରେ ଯେତେ ଉଠେ ଦ୍ୱାହି,
ଚରିବ ତଳକୁ ଖସେ—
ନୈତିକତା ଅବସାନ ଲଭେ···
ହେ ମୋର ସମାଜ ସଭ୍ୟ,
ଇନ୍ଦ୍ରପୁର ପରମ ପୂଜାରୀ,
ଅବରଣ ଖୋଲି ହୁଅ ପ୍ରକୃତ ସନ୍ତାନ।
ଅମୃତ ପରଶେ କର ଉଜ୍ଜୀବିତ ପ୍ରାଣ !!
ଛୁଟିଯାଉ ନରକ ଯନ୍ତ୍ରଣା,
ଝରି ପଡୁ ବକ୍ଷେ ତବ ନିରୁପମ ବିମଳ ଜ୍ୟୋଚ୍ଛନା।

—୦—

## କୋଇଲି

କୋଇଲି ଆମର ପରବାର ଗଟେ ।
ଧାନଉଁସା, ଧାନମୁଁହା, ଧାନକୁଣ୍ଡା, ଛୁଆଡ଼ିଆ, ବୋଲବାଇ ଭଳି
ସବୁ ତା'ର ନାଁ ।
ସବୁଠିଁ ବାହାରେ ଘରେ ଡାକନ୍ତେ 'କୋଇଲି' 'କୋଇଲି' ।
କୋଇଲିଠିଁ ଶୋଭା ଦେଖ ତା'ର...
ବୟସ ତରୁଣ୍ ପାଖ ...
ଫୁଟୁକା ଫୁଟୁକା ଗାଲ ... ନ ଦିଶେ ସୁନ୍ଦର ।
ସାଥେ ତା'ର କେତେ ଝିଅଟିଏ —
ବୟସ ପାଞ୍ଚ୍ର ତଳେ—
ଗୋଡ଼ ସରୁ, ପେଟ କଂଭୁ ବାହାରେ ଅଗଲୁ,
ପ୍ଲୀହା ବୋଝେ ଅଛ ଭାର ।
ଯେଦିନ ମୁଁ ବୁଲୁଥାଏଁ ...
କୋଇଲି ଉଁସାଉଥାଏ ସୁନ ଝିଲ ଧାନ...
ଓଟୁଥାଏ ଧାନ ଡାଲ୍ ବାମ୍ଫ—
ବଟେଖେ କେତେଟି ଖାଉଥାଏ ଛୁଅଁଅ ଖୀର ।
ପଣତରେ ମୁହଁ ଢାଙ୍କି କହୁଲା କୋଇଲି
ଶୁଣାଇ ଶୁଣାଇ ମୋତେ
ଛୁଅଁଅ କାନେ—
''ଯାଅ ଦେ, ଡାକନ୍ତି 'ଦାଦା', ଖୋଇ ପରି ଦେଖି ଦାଦା ତୋର !"

ନ ବୁଝିଲି ଶ୍ଳେଷ ହିଅ...
ନ ମାନିଲି ବଡ କଥା...
ଅଶାନ୍ତ ଉତ୍ସାହେ ଲଫ ଚୁମ୍ବିଲ ସ୍ତନ ।
ଜାଣୁ ପ୍ରାଣେ ବଥିସିଲା ଘଟଣ
ହିଅକୁ ଜାଣୋଇ ଦେହେ କୋଇଲି ନିଅନେ
ଝରଣା ସ୍ପର୍ଶିଲେ ,
"ଦାଦା ଦେଚଦ ବର୍ଣ୍ଣେ କେ ଯାଅ ।"
ନ ଅପିଲ ଶିଶୁ ।
ଗୋଟେ ଦେଖି କାନ୍ଦିଲା ଅଯସ୍ତ ।
ଫଳବେଳେ ପୁର୍ଣ୍ଣି...
ବସିଥାଏଁ ଗୋଲାପ ଗୁଡେ ମୁଁ...
ଭଲସୀ ଭଲସୀ ଗାଣି ବୋହୁଥାଏ କୋଇଲି ସେବାରେ—
ପଛେ ପଛେ ଧାଉଁଥାଏ ହିଅ କାନ୍ଦ କାନ୍ଦ ।
ପ୍ରବୋଧ ଦେବାକୁ ତା'ରେ କୋଇଲିର ନ ଥାଏ ସମୟ ।
ସେ କହୁଲ, "ବସିଛନ୍ତି ଦାଦା,
ତୋତେ କି' ଲାଗୁଛି ଡର ?"
"ଅ, ଅ, କୁନି ମୋର ପାଖେ..."
ଅଦରରେ କହିଲି ମୁଁ ଡାକି ।
ନ ଅସିଲା ଶିଶୁ----ହଟକି ହେଲା ତା' ମାଆ ।।
କହିଲା ତଥାପି ସିଏ—"ଯାଉନାହୁଁ ଭୁଝା ଅଲେ,
ଡାକୁଛନ୍ତି ଦାଦା ତୋର କେବେ ?"

—ସମାପ୍ତ—

କଟକ କୃଷକ ପ୍ରେସରେ ଶ୍ରୀ ସଚ୍ଚିଦାନନ୍ଦ ମଣ୍ଡଳଙ୍କ ଦ୍ୱାରା ମୁଦ୍ରିତ—୧୯୪୯